Licence No. C.R.N.P. 5—Licensed to post without Pre-Payment



ସଚିବାଳୟଠାରେ ଅନୁଷ୍ଠିତ ଏକ ଉଚ୍ଚ ସ୍ତରୀୟ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଆସ ନିଯୁକ୍ତି କାର୍ଯ୍ୟକ୍ରମର ସମୀକ୍ଷା କରୁଛନ୍ତି । ଉକ୍ତ ବୈଠକରେ ମନ୍ତ୍ରୀ ପରିଷଦର ସଭ୍ୟବୃନ୍ଦ ଓ ବରିଷ୍ଠ ପଦାଧିକାରୀମାନେ ଯୋଗଦାନ କରିଛନ୍ତି ।

PRINTED AT ORISSA GOVERNMENT PRESS, CUTTACK



ଭୁବନେଶ୍ୱରର ଚନ୍ଦ୍ରଶେଖରପୁରଠାରେ ଦକ୍ଷିଣ-ପୂର୍ବ ରେଳବାଇର ମୁଖ୍ୟ ପ୍ରଶାସନିକ ଦପ୍ତରକୁ
ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।



ପୁରୀଠାରେ ରଥଯାତ୍ରା ଅବସରରେ ଜନ୍ ଆମ୍ବୁଲାନ୍ସ ବିଗ୍ରେଡ୍‌ର ଜାତୀୟ ସେବା ଶିବିରକୁ ସ୍ୱାସ୍ଥ୍ୟ
ମନ୍ତ୍ରୀ ସଇଦ୍ ମୁସ୍ତାଫିଜ୍ ଅହମଦ୍ ଉଦ୍‌ଘାଟନ କରି ଅଭିବାଦନ ଗ୍ରହଣ କରୁଛନ୍ତି ।

# ଉତ୍କଳ ପ୍ରସଙ୍ଗ

୫୦ ଭାଗ  ୧ମ ସଂଖ୍ୟା  ଶ୍ରାବଣ ୧୯୧୫ ଶକାବ୍ଦ  ଅଗଷ୍ଟ ୧୯୯୩




ପ୍ରକାଶନ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

# ସୂଚୀ

# ଜାତୀୟ ସଙ୍ଗୀତ

"ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶୀଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"

# ଜାତୀୟତାର ପ୍ରତୀକ

କାଶ୍ମୀରରୁ କନ୍ୟାକୁମାରୀ ଯାଏଁ ଓ କାମରୂପଠାରୁ ଦ୍ୱାରକା ଯାଏଁ ଆମର ୮୦ କୋଟି ଲୋକଙ୍କୁ ଆଜି ଏକାଠି ବାନ୍ଧି ରଖିଛି ତିନୋଟି ମମତାର ଡୋରି :

## ଜାତୀୟ ପତାକା



## ଜାତୀୟ ସଙ୍ଗୀତ

ଜନ—ଗଣ—ମନ—ଅଧିନାୟକ ଜୟ ହେ
ଭାରତ—ଭାଗ୍ୟ—ବିଧାତା
ପଞ୍ଜାବ—ସିନ୍ଧୁ—ଗୁଜୁରାଟ—ମରାଠା
ଦ୍ରାବିଡ଼—ଉତ୍କଳ—ବଙ୍ଗ
ବିନ୍ଧ୍ୟ—ହିମାଚଳ—ଯମୁନା—ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା,
ଜନଗଣ—ମଙ୍ଗଳଦାୟକ ଜୟ ହେ,
ଭାରତ—ଭାଗ୍ୟ—ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

## ଜାତୀୟ ସଙ୍କେତ



ଏ ତିନୋଟିର ପଛରେ ଅଛି—ଯୁଗ ଯୁଗର ଇତିହାସ, ଆମର ପ୍ରାଚ୍ୟ ପରମ୍ପରା ଓ ଆତ୍ମତ୍ୟାଗର ମହନୀୟତା । ବଂଶାନୁକ୍ରମେ ସମଗ୍ର ଜାତି ତଥା ପ୍ରତ୍ୟେକ ବ୍ୟକ୍ତି ପକ୍ଷେ ଏ ତିନୋଟି ଗୋଟିଏ ଗୋଟିଏ ପବିତ୍ର ନ୍ୟାସ ବା ଦାୟ. ସେଗୁଡ଼ିକର ସୁରକ୍ଷା ପାଇଁ ଏ ଜାତି ଯୁଗେ ଯୁଗେ ପ୍ରାଣ ପଣ କରି ଆସିଛି, କରୁଛି ଓ କରୁଥିବ । ନିଜର ବିଶ୍ୱାସରେ ଅଟଳ ରହି ଯେଉଁ ଜାତି ଯୂପ କାଠରେ ହସି ହସି 'ଶିର' ଦେଇପାରେ, ସାରା ବିଶ୍ୱକୁ କୁହୁପ ଦୃଷ୍ଟିରେ ଦେଖୁ ଯେ ବିଶ୍ୱ ମଞ୍ଚରେ ନିରପେକ୍ଷତାର ମଶାଲ ଜାଳି ଧରେ, ଯାର ଆତ୍ମ ଶକ୍ତି ଆଗରେ ସଙ୍ଗୀନ୍ ଯୁନ ମଥା ନତ କରେ — ତା'ର ଆଶା ଅଜେୟ, ଅମର ।

ଆ ମ ର ପ ତା କା

ତିନୋଟିର ପରିଚୟ ସମସ୍ତେ ଜାଣନ୍ତି ।

# ସ୍ୱାଧୀନତା ଦିବସ ଉପଲକ୍ଷେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀଙ୍କ ବାର୍ତ୍ତା



ଦେଶର ୪୬ତମ ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ ମୁଁ ଓଡ଼ିଶାର ଜନସାଧାରଣଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ସଦିଚ୍ଛା ଜ୍ଞାପନ କରୁଛି ।

ନିକଟରେ ଆମେ ଭାରତ ଛାଡ଼ ଆନ୍ଦୋଳନର ସୁବର୍ଣ୍ଣ ଜୟନ୍ତୀ ପାଳନ କରିଛେ । ଏହି ଅବସରରେ ଆମେ ମହାତ୍ମା ଗାନ୍ଧୀ, ବାଳ ଗଙ୍ଗାଧର ତିଳକ, ଲାଲା ଲଜପତ ରାୟ, ଗୋପାଳ କୃଷ୍ଣ ଗୋଖ୍‌ଲେ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଆବୁଲ କାଲାମ୍ ଆଜାଦ୍, ଖାନ୍ ଅବଦୁଲ୍ ଗଫୁର୍ ଖାଁ, ସି: ରାଜଗୋପାଳାଚାରୀ, ଡଃ ରାଜେନ୍ଦ୍ର ପ୍ରସାଦ, ଜୟ ପ୍ରକାଶ ନାରାୟଣ, ପଣ୍ଡିତ ଜବାହରଲାଲ ନେହେରୁ, ଡଃ ଭୀମ ରାଓ ଆମ୍ବେଦକର ଏବଂ ଅନ୍ୟ ବହୁ ଜାତୀୟ ନେତାଙ୍କର ଅମର କୀର୍ତ୍ତି ସ୍ମରଣ କରି ଗର୍ବ ଅନୁଭବ କରିଛେ । ସେମାନଙ୍କର ବୀରତ୍ୱମୟ ଅବଦାନ ଚିରକାଳ ଆମର ପ୍ରେରଣାର ଉତ୍ସ ହୋଇ ରହିବ ।

ବିଦେଶୀ ଶାସନ କବଳରୁ ଦେଶକୁ ମୁକ୍ତ କରିବା ପାଇଁ ଅଗଣିତ ଦେଶବାସୀ ଯେଉଁ ନିଃସ୍ୱାର୍ଥପର ଆତ୍ମୋତ୍ସର୍ଗ କରିଥିଲେ ଓ ହସି ହସି ଶହୀଦ୍ ହୋଇଥିଲେ, ସ୍ୱାଧୀନତାର ଫଳ ଆସ୍ୱାଦନ କଲାବେଳେ ମୁହୂର୍ତ୍ତକ ପାଇଁ ମଧ୍ୟ ଆମେ ତାହା ଭୁଲିବା ଉଚିତ ନୁହେଁ । ଆମେ ଐକ୍ୟ ଓ ସାମ୍ୟ ମନ୍ତ୍ରରେ ଦୀକ୍ଷିତ ହୋଇ ସୁଖ ଓ ସମୃଦ୍ଧି ଉପଭୋଗ କରିବା ଏହା ଥିଲା ଏହି ବଳୀଦାନର ଲକ୍ଷ୍ୟ । ଜାତିର ଜନକ ମହାତ୍ମା ଗାନ୍ଧୀ, ଯେ କି ସତ୍ୟ ଓ ଅହିଂସା ମାର୍ଗ ଅନୁସରଣ କରିବାକୁ ଆମକୁ ଉଦ୍‌ବୁଦ୍ଧ କରିଥିଲେ, ତାଙ୍କ ପ୍ରତି ଆମେ ପ୍ରତି ମୁହୂର୍ତ୍ତରେ ଆମର ଭକ୍ତିପୂତ ପ୍ରଣତି ଜ୍ଞାପନ କରିବା ଉଚିତ । ଦେଶର ସ୍ୱାଧୀନତା ସଂଗ୍ରାମରେ ଉତ୍କଳମଣି ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ଶ୍ରୀମତୀ ରମା ଦେବୀ, ଶହୀଦ୍ ଲକ୍ଷ୍ମଣ ନାଏକ ପ୍ରମୁଖ ଓଡ଼ିଶାର ବିଶିଷ୍ଟ ନେତୃବୃନ୍ଦଙ୍କର ମହାନ୍ ଅବଦାନ ଆମର ଯାତ୍ରାପଥକୁ ସବୁବେଳେ ଆଲୋକମୟ କରି ଆମକୁ ଦିଗ୍‌ଦର୍ଶନ ଦେବ । ଏହି ସବୁ ମହାନ୍ ଆତ୍ମା ପ୍ରତି ଆମେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଆବଶ୍ୟକ ।

ବହୁ କବି, ଲେଖକ, ଔପନ୍ୟାସିକ, କଳାକାର, ସାମ୍ବାଦିକ ଏବଂ ଭାବୁକ ବିଦେଶୀ ଶାସନ ବିରୁଦ୍ଧରେ ଜନସାଧାରଣଙ୍କ ମଧ୍ୟରେ ଉନ୍ମାଦନାଭରା ଗଣଚେତନା ସୃଷ୍ଟି କରିବା ଦିଗରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେ ସମସ୍ତଙ୍କ ପ୍ରତି ମଧ୍ୟ ଆମର ସସମ୍ମାନ ଶ୍ରଦ୍ଧା ଓ ଭକ୍ତି ଜ୍ଞାପନ କରିବା ଉଚିତ ।

ସାମାଜିକ ନ୍ୟାୟ ଉପରେ ପ୍ରତିଷ୍ଠିତ ଦାରିଦ୍ର୍ୟମୁକ୍ତ ଏବଂ ଏକତାବଦ୍ଧ ଭାରତବର୍ଷର ଯେଉଁ ସ୍ୱପ୍ନ ଆମର ନେତୃବୃନ୍ଦ, ଶହୀଦ୍ ଓ ସ୍ୱାଧୀନତା ସଂଗ୍ରାମୀମାନେ ଦେଖୁଥିଲେ ତାହାକୁ ସାକାର କରିବା ଆମର ମହାନ୍ କର୍ତ୍ତବ୍ୟ । ଆଜି ଆତ୍ମ ସମୀକ୍ଷା କଲେ ଏହା ସୁସ୍ପଷ୍ଟ ହେବ ଯେ ଏ ଦିଗରେ ବହୁ କାର୍ଯ୍ୟ ବର୍ତ୍ତମାନ ସୁଦ୍ଧା ବାକୀ ରହିଛି ।

ପ୍ରକୃତି ଆମ ରାଜ୍ୟ ଓଡ଼ିଶା ପ୍ରତି ଅତି ସଦୟ । ପ୍ରତ୍ୟେକ ସ୍ଥାନରେ ସମସ୍ତ ପ୍ରକାର ପ୍ରାକୃତିକ ସମ୍ପଦ ପରିପୂର୍ଣ୍ଣ ହୋଇ ରହିଛି । ଜନମଙ୍ଗଳ ପାଇଁ ଦକ୍ଷତାର ସହ ଏହାକୁ ଉପଯୁକ୍ତ ଭାବେ ବିନିଯୋଗ କରିବାକୁ ହେବ । ବହୁମୁଖୀ ଉନ୍ନୟନ ଆମର ମୁଖ୍ୟ ଲକ୍ଷ୍ୟ ହେବା ଆବଶ୍ୟକ ।

ଓଡ଼ିଶାର ମହାନ୍ ସାଂସ୍କୃତିକ ପରମ୍ପରା ଅନ୍ୟମାନଙ୍କ ପାଇଁ ଈର୍ଷା ଉଦ୍ଦୀପକ ହେବା ସ୍ୱାଭାବିକ । ଏହାର ବୈଭବପୂର୍ଣ୍ଣ ଭାସ୍କର୍ଯ୍ୟ, ରୋମାଞ୍ଚକର ନୃତ୍ୟ କଳା, ସମ୍ମୋହନଭରା ସଙ୍ଗୀତ, ବିସ୍ମୟକର କଳା ଆମର ଅମୂଲ୍ୟ ସମ୍ପଦ । ତେବେ ଏହି

ପରମ୍ପରାରୁ ପ୍ରେରଣା ଲାଭ କରି ଏହାକୁ ଅଧିକ ପରିପୁଷ୍ଟ କରିବାକୁ ଆମକୁ ଉଦ୍ୟମ କରିବାକୁ ହେବ । ଏକ ଗୌରବୋଜ୍ଜ୍ୱଳ ଭବିଷ୍ୟତ ଗଠନ ପାଇଁ ବର୍ତ୍ତମାନର ସଫଳକୁ ପାଥେୟ କରି ଆମକୁ କଠୋର ପରିଶ୍ରମ କରିବାକୁ ପଡ଼ିବ ।

ଗତ ସାଢ଼େ ତିନି ବର୍ଷ ମଧ୍ୟରେ ଜଳସେଚନ ଓ ଆନୁଷଙ୍ଗିକ ଉନ୍ନୟନ ଭିତ୍ତି ଭୂମିର ସମ୍ମେଳନ ମାଧ୍ୟମରେ କୃଷି ଉତ୍ପାଦନ ବୃଦ୍ଧି ପାଇଁ ସକ୍ରିୟ ଉଦ୍ୟମ କରାଯାଉଛି । ଆଇ: ଆର: ଡି: ପି:, ଜବାହର ରୋଜଗାର ଯୋଜନା ପ୍ରଭୃତି ଗ୍ରାମ୍ୟ ବିକାଶ ଯୋଜନାକୁ ଅଧିକ ଫଳପ୍ରଦ କରି ଗ୍ରାମାଞ୍ଚଳ ଲୋକମାନଙ୍କ ନିମନ୍ତେ ଅଧିକ କର୍ମ ସଂସ୍ଥାନ କରିବା ପାଇଁ ପଦକ୍ଷେପ ନିଆଯାଉଛି । ଗ୍ରାମ୍ୟ ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା, ପାନୀୟ ଜଳ ଯୋଗାଣ, ପ୍ରୌଢ଼ ଶିକ୍ଷା ପ୍ରଭୃତିକୁ ଅଗ୍ରାଧିକାର ଦିଆଯାଉଛି ।

ରାଜ୍ୟରେ ଶିଳ୍ପ ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ନୂତନ ଶିଳ୍ପ ନୀତି ପ୍ରଣୟନ କରାଯାଇଛି । ଶିଳ୍ପୋଦ୍ୟୋଗୀମାନେ ଏହି ଶିଳ୍ପ ନୀତିର ସୁବିଧା ଉପଭୋଗ କରି ଶିଳ୍ପ ବିକାଶକୁ ଗତିଶୀଳ କରିବାକୁ ଆଗେଇ ଆସିବା ଉଚିତ । ପାଞ୍ଚଟି ଇସ୍ପାତ୍ କାରଖାନା ଓ ଅନେକ ମୁଖ୍ୟ ଶିଳ୍ପ ପ୍ରତିଷ୍ଠିତ ହେବାକୁ ଯାଉଛି । ବାହାବଳପୁରଠାରେ ଏକ କ୍ଷୁଦ୍ର ବନ୍ଦର ପ୍ରତିଷ୍ଠିତ ହୋଇଛି ଓ ଗୋପାଳପୁର ବନ୍ଦରକୁ ଏକ ବୃହତ୍ ବନ୍ଦରରେ ପରିଣତ କରିବା କାର୍ଯ୍ୟକ୍ରମ ରହିଛି ।

ଜିଲ୍ଲା ସ୍ତରରେ ପ୍ରଶାସନିକ ଦକ୍ଷତା ବୃଦ୍ଧି ପାଇଁ ଚଉଦଟି ନୂତନ ଜିଲ୍ଲା ସୃଷ୍ଟି କରାଯାଇଛି । ପ୍ରଶାସନିକ କଳକୁ ଦୁର୍ନୀତିମୁକ୍ତ କରିବା ପାଇଁ ରାଜ୍ୟ ସରକାର ଏକ ସ୍ୱତନ୍ତ୍ର କୋର୍ଟ ପ୍ରତିଷ୍ଠା କରିଛନ୍ତି । ବେଆଇନ୍ ଭାବରେ ଅର୍ଜିତ ସମ୍ପତ୍ତି ବାଜ୍ୟାପ୍ତ କରିବା ପାଇଁ ଏହି କୋର୍ଟକୁ କ୍ଷମତା ଦିଆଯାଇଛି ।

ଆଦିବାସୀ, ହରିଜନ ଏବଂ ଅନ୍ୟ ଦୁର୍ବଳ ଶ୍ରେଣୀ ଲୋକଙ୍କର ସ୍ୱାର୍ଥ ପ୍ରତି ଗୁରୁତ୍ୱ ଦେଇ ସାମାଜିକ ଅର୍ଥନୀତି ଓ ସମାଜ କଲ୍ୟାଣ କାର୍ଯ୍ୟକ୍ରମକୁ ଅଗ୍ରାଧିକାର ଦିଆଯାଉଛି । ଦେଶ ଗଠନ ଦିଗରେ ମହିଳାମାନଙ୍କୁ ଉପଯୁକ୍ତ ଭୂମିକା ଗ୍ରହଣର ସୁଯୋଗ ଦେବା ନିମନ୍ତେ ଅଗ୍ରାଧିକାର ଭିତ୍ତିରେ ସେମାନଙ୍କୁ ସହାୟତା ପ୍ରଦାନ କରାଯାଉଛି । ଚାକିରି କ୍ଷେତ୍ରରେ ସ୍ଥାନ ସଂରକ୍ଷଣ, ସେମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ ଆଇନ୍ ପ୍ରଣୟନ ଏବଂ ସେମାନଙ୍କର ଅର୍ଥନୈତିକ ଅଭ୍ୟୁତ୍ଥାନ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ କାର୍ଯ୍ୟକାରୀ କରାଯାଉଛି । ମହିଳାମାନଙ୍କ ଉପରେ ଅତ୍ୟାଚାର ଏବଂ ଯୌତୁକ ପ୍ରଥା ବିଲୋପ ପାଇଁ କଠୋର ଆଇନ୍ ପ୍ରଣୟନ ସହ ନୂତନ ଦୃଷ୍ଟିଭଙ୍ଗୀ ମଧ୍ୟ ଆବଶ୍ୟକ । ବିବାହୋପଯୋଗୀ ଯୁବକ ଯୁବତୀମାନେ ଯୌତୁକ ଗ୍ରହଣ କରିବା ବା ଦେବାକୁ ପ୍ରତ୍ୟାଖ୍ୟାନ କରି ଅନ୍ୟମାନଙ୍କ ନିମନ୍ତେ ଏକ ନୂତନ ଆଦର୍ଶ ସୃଷ୍ଟି କରିବାକୁ ସେମାନଙ୍କୁ ମୁଁ ଆହ୍ୱାନ କରୁଛି ।

ପୁରୀର ବିଶ୍ୱ ପ୍ରସିଦ୍ଧ ଶ୍ରୀଜଗନ୍ନାଥ ମନ୍ଦିରର ମରାମତି ଓ ସୁରକ୍ଷା କାର୍ଯ୍ୟ ରେକର୍ଡ଼ ସମୟସୀମା ମଧ୍ୟରେ ସମ୍ପୂର୍ଣ୍ଣ ହୋଇଥିବା ବାସ୍ତବରେ ଆନନ୍ଦର କଥା ।

ଆମର ବିଭିନ୍ନ ସାଫଲ୍ୟ ପାଇଁ ଆମେ ବାସ୍ତବରେ ଗର୍ବ ଅନୁଭବ କରିବାର ଅବକାଶ ରହିଛି । ଏହା ସତ୍ତ୍ୱେ, ବର୍ତ୍ତମାନ ସୁଦ୍ଧା ବହୁ ଲୋକ ଦାରିଦ୍ର୍ୟ ଓ ଦୁଃସ୍ଥିତି ମଧ୍ୟରେ ଜୀବନ ଯାପନ କରୁଛନ୍ତି । ତୁରନ୍ତ ସେମାନଙ୍କର ସହାୟତା ପାଇଁ ଆମକୁ ପଦକ୍ଷେପ ନେବାକୁ ପଡ଼ିବ । ମୋ ମତରେ ଜନସଂଖ୍ୟା ନିୟନ୍ତ୍ରଣ, ସରକାରୀ ଓ ସ୍ୱେଚ୍ଛାସେବୀ ସଂଗଠନର ସମନ୍ୱିତ ଉଦ୍ୟମ ଏବଂ ଉନ୍ନୟନ କାର୍ଯ୍ୟକ୍ରମରେ ଜନସାଧାରଣଙ୍କର ସକ୍ରିୟ ଅଂଶ ଗ୍ରହଣ ଦ୍ୱାରା ଏହି ଲକ୍ଷ୍ୟ ହାସଲ ସମ୍ଭବପର ହୋଇପାରିବ । ଏହି ପନ୍ଥା ଅନୁସରଣ କରି ଆମର ବହୁ କଷ୍ଟରେ ଅର୍ଜିତ ସ୍ୱାଧୀନତାର ସୁରକ୍ଷା ଓ ଏହାର ସୁଦୃଢ଼ୀକରଣ ସହ ସମସ୍ତ ନାଗରିକଙ୍କୁ ସୁଖ ଓ ସମୃଦ୍ଧି ଯୋଗାଇ ଦେବାକୁ ହେବ ।

ଏହି ପବିତ୍ର ଦିବସରେ ଏକ ସମୃଦ୍ଧ, ଧର୍ମ ନିରପେକ୍ଷ ଏବଂ ଏକତାବଦ୍ଧ ଭାରତ ସୃଷ୍ଟି ପାଇଁ ଉତ୍ସର୍ଗୀକୃତ ଉଦ୍ୟମ କରିବା ପାଇଁ ଆସନ୍ତୁ ଆଜି ଶପଥ ଗ୍ରହଣ କରିବା ।

ମୁଁ ଆପଣମାନଙ୍କର ସୁଖ ଓ ଶାନ୍ତି କାମନା କରୁଛି ।

'ଜୟହିନ୍ଦ'।

# ସ୍ୱାଧୀନତା ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀ

# ଶ୍ରୀ ବିଜୁ ପଟ୍ଟନାୟକଙ୍କ ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ ରାଜ୍ୟବାସୀ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା, ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସ୍ୱାଧୀନତା ଦିବସ ଆମ ଜାତୀୟ ଜୀବନର ଏକ ମହାନ୍ ଓ ପବିତ୍ର ଦିବସ । ଦେଶର ସ୍ୱାଧୀନତା ପାଇଁ ଯେଉଁମାନେ ପ୍ରାଣବଳି ଦେଇ ଶହୀଦ ହୋଇଛନ୍ତି, ସେମାନେ ଜାତିର ନମସ୍ୟ । ଆଜି ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ ସେମାନଙ୍କ ଅମର ସ୍ମୃତି ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ମହାତ୍ମା ଗାନ୍ଧୀ ଓ ଅନ୍ୟାନ୍ୟ ଜାତୀୟ ନେତାମାନେ ସ୍ୱାଧୀନ ଭାରତର ଯେଉଁ ସ୍ୱପ୍ନ
ଦେଖିଥିଲେ, ତାହା କେତେଦୂର ସଫଳ ହୋଇଛି ? ଏ କଥା ଆମକୁ ଆଜି ବିଚାର କରିବାକୁ ପଡ଼ିବ । ଏକ ଶୋଷଣମୁକ୍ତ,
ସୁସ୍ଥ, ସୁନ୍ଦର ସମାଜ ପ୍ରତିଷ୍ଠା କରିବା ସ୍ୱାଧୀନତା ଆନ୍ଦୋଳନର ଅସଲ ଉଦ୍ଦେଶ୍ୟ ଥିଲା । କିନ୍ତୁ, ଆଜି ଦେଶରୁ ଶୋଷଣ,
ବେକାରୀ,ଗରିବୀ ହଟିବା ତ ଦୂରର କଥା ବରଂ ବଢ଼ିଛି । ଆମକୁ ଏହା ବିରୁଦ୍ଧରେ ଦୃଢ଼ ଭାବରେ ଲଢ଼େଇ କରିବାକୁ ପଡ଼ିବ ।
ସ୍ୱାଧୀନତା ସଂଗ୍ରାମ ବେଳର ତ୍ୟାଗ ମନୋଭାବ ଓ ଦେଶପ୍ରେମ ଜାଗ୍ରତ କରି ଦେଶ ଗଠନ କାର୍ଯ୍ୟରେ ଲାଗିବାକୁ ପଡ଼ିବ ।
ବାହାରୁ କେହି ଆସି ଆମ ପାଇଁ କିଛି କରିଦେବେ ନାହିଁ । ଆମ କାମ ଆମକୁ କରିବାକୁ ପଡ଼ିବ । ମୋର ଦୃଢ଼ ବିଶ୍ୱାସ, ମୋ
ରାଜ୍ୟର ଅଗଣିତ ଭାଇଭଉଣୀ ଏ ଲଢ଼େଇରେ ଯୋଗ ଦେବା ପାଇଁ ନିଶ୍ଚିତ ଭାବେ ଆଗେଇ ଆସିବେ ।

ସାଢ଼େ ତିନି ବର୍ଷ ତଳେ ରାଜ୍ୟବାସୀଙ୍କ ଅଭୂତପୂର୍ବ ଶ୍ରଦ୍ଧା ଓ ସହଯୋଗ ନେଇ ମୁଁ ଯେତେବେଳେ ରାଜ୍ୟର ଶାସନ
ଦାୟିତ୍ୱ ଗ୍ରହଣ କଲି, ସେତେବେଳେ ପ୍ରଶାସନରୁ ଦୁର୍ନୀତି ଓ ଶିଥିଳତା ଦୂର କରିବା ଦିଗରେ କଠୋର ପଦକ୍ଷେପ ନିଆଯିବ ବୋଲି
ଘୋଷଣା କରିଥିଲି । ଏହା ମଧ୍ୟରେ ସାଧାରଣ ଜୀବନ ଓ ପ୍ରଶାସନରେ ଉଚ୍ଚ ସ୍ଥାନ ଅଧିକାର କରିଥିବା ଦୁର୍ନୀତିଗ୍ରସ୍ତ
ବ୍ୟକ୍ତିମାନଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ପାଇଁ ଓଡ଼ିଶା ସ୍ୱତନ୍ତ୍ର କୋର୍ଟ ଆଇନ ପ୍ରବର୍ତ୍ତନ କରାଯାଇଛି । ସେହିଭଳି,
ଆମ ସମାଜରେ ବିବାହ ବ୍ୟବସ୍ଥା କଳୁଷିତ ଓ ବ୍ୟୟବହୁଳ ହୋଇପଡ଼ିଛି । ଏଥିପାଇଁ ବଧୂ ହତ୍ୟା ଓ ନାରୀ ନିର୍ଯ୍ୟାତନା ଭଳି
ଜଘନ୍ୟ କାଣ୍ଡମାନ ନିତିଦିନିଆ ଘଟଣାରେ ପରିଣତ ହୋଇଛି । ମୋ ସରକାର ବ୍ୟୟବହୁଳ ଓ ଆଡ଼ମ୍ବରପୂର୍ଣ୍ଣ ବିବାହ
ବିରୁଦ୍ଧରେ ଜନମତ ଗଠନ କରିବା ପାଇଁ ଅନ୍ୟ ଏକ ଆଇନ ତିଆରି କରିଛି । ମୋର ଦୃଢ଼ ବିଶ୍ୱାସ, ଏହି ଆଇନ ସମାଜରୁ
ଯୌତୁକ ନିର୍ଯ୍ୟାତନା ଓ ବଧୂ ହତ୍ୟା ଭଳି ଘୃଣ୍ୟ କାରବାର ଦୂର କରିବାରେ ସହାୟକ ହେବ ।

ମୋ ସରକାର ଲୋକଙ୍କ ହାତରେ କ୍ଷମତା ଦେବା ସଙ୍ଗେ ସଙ୍ଗେ ରାଜ୍ୟର ଅଗଣିତ ମହିଳାମାନଙ୍କୁ ଶାସନରେ
ଅଂଶୀଦାର କରିବା ପାଇଁ ସଫଳ ପଦକ୍ଷେପ ଗ୍ରହଣ କରିଛି । ରାଜ୍ୟରେ ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି ଓ ସ୍ୱାୟତ୍ତ ଶାସନ
ସଂସ୍ଥାଗୁଡ଼ିକ ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ପରିଚାଳିତ ହେଉଛି । ପ୍ରଶାସନକୁ ପ୍ରତ୍ୟେକ ସ୍ତରରେ ନିର୍ବାଚିତ ସଂସ୍ଥାମାନଙ୍କ
ପାଖରେ ଉତ୍ତରଦାୟୀ କରିବା ପାଇଁ ବ୍ୟବସ୍ଥା କରାଯାଇଛି । ଏହା ଫଳରେ ପ୍ରକୃତ ଲୋକ ଶାସନ ପ୍ରତିଷ୍ଠିତ ହେବ ଏବଂ
ଜନସାଧାରଣଙ୍କ ହାନିଲାଭ, ସୁଖ ଦୁଃଖ ଓ ଉନ୍ନୟନ ବ୍ୟବସ୍ଥା ସେମାନେ ନିଜେ ବୁଝିବେ । ଜିଲ୍ଲା ପରିଷଦ ଗଠନ ପାଇଁ ଏକ
ପ୍ରଗତିଶୀଳ ଆଇନ ମଧ୍ୟ ବିଧାନ ସଭାରେ ପାଶ୍ ହୋଇଛି । ଦେଶରେ ଲୋକସଂଖ୍ୟା ହୁ ହୁ ବଢ଼ି ଚାଲିଛି । ଏହା ଫଳରେ
ଉନ୍ନୟନ କାର୍ଯ୍ୟକ୍ରମର ସୁଫଳ ଲୋକମାନଙ୍କ ପାଖରେ ଯେତିକି ପହଞ୍ଚିବା କଥା ତାହା ପହଞ୍ଚିପାରୁ ନାହିଁ । ଜନସଂଖ୍ୟାକୁ

ରୋକିବା ପାଇଁ ଆମକୁ କେତେକ କଠୋର ପଦକ୍ଷେପ ନେବାକୁ ପଡ଼ିବ । ଦୁଇଟିରୁ ଅଧିକ ସନ୍ତାନ ଥିବା ପିତା ମାତାମାନେ ଜିଲ୍ଲା ପରିଷଦର ନିର୍ବାଚନରେ ଭାଗ ନେଇପାରିବେ ନାହିଁ ବୋଲି ବ୍ୟବସ୍ଥା ହେଉଛି । ସେହିପରି ସରକାରୀ ଚାକିରିରେ ଥିବା ଲୋକମାନଙ୍କର ଦୁଇଟିରୁ ଅଧିକ ସନ୍ତାନ ହେଲେ ସେମାନେ ଚାକିରି ହରାଇବେ । ଜନସଂଖ୍ୟା ସ୍ଥିର ନରହିଲେ ଆମର ମୁଣ୍ଡପିଛା ଆୟ ବଢ଼ିବା ଅସମ୍ଭବ ହୋଇପଡ଼ିବ । ପୃଥିବୀର ଉନ୍ନତ ରାଷ୍ଟ୍ରଗୁଡ଼ିକ ଜନସଂଖ୍ୟା ବୃଦ୍ଧିକୁ ସଫଳ ଭାବରେ ରୋକି ପାରିଥିବାରୁ ସମୃଦ୍ଧ ହୋଇପାରିଛନ୍ତି । ଦେଶର ଉନ୍ନତି ପାଇଁ, ନିଜର ଓ ନିଜ ପରିବାରର କଲ୍ୟାଣ ପାଇଁ ଆମକୁ ଏ ଦିଗରେ ସଚେତନ ହେବାକୁ ପଡ଼ିବ ।

ଇସ୍ପାତ କାରଖାନା ନିର୍ମାଣ ଓ ବିଦେଶୀ ପୁଞ୍ଜି ଲଗାଣ ଦ୍ୱାରା ଅଧିକ ସଂଖ୍ୟକ ବିଜୁଳି ଶକ୍ତି ପ୍ରକଳ୍ପ ପ୍ରତିଷ୍ଠା ପାଇଁ ମୋର ଉଦ୍ୟମ ଜୋରସୋରରେ ଚାଲିଛି । ପ୍ରତିଭୂତି ଦୁର୍ନୀତି ଯୋଗୁଁ ଆନ୍ତର୍ଜାତିକ ସ୍ତରରେ ଭାରତର ପତିଆରା ଉପରେ ଆଞ୍ଚ ଆସିଥିଲେ ହେଁ ଏ ଦିଗରେ ନିଶ୍ଚିତ ଭାବେ ସଫଳତା ମିଳିବ । କୃଷି, କ୍ଷୁଦ୍ର ଶିଳ୍ପ, କୁଟୀର ଶିଳ୍ପ, ଗୋ–ପାଳନ, ମାଛ ଚାଷ, ହସ୍ତତନ୍ତ, ଗ୍ରାମ୍ୟ ଉନ୍ନୟନ ସହିତ ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ ଓ ନିର୍ମାଣ ଆଦି ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଶାକୁ ଏକ ଆଗୁଆ ରାଜ୍ୟରେ ପରିଣତ କରିବା ପାଇଁ ମୋ ସରକାରର ଉଦ୍ୟମ ଜାରୀ ରହିଛି । ମୋର ଦୃଢ଼ ଆଶା ଓ ବିଶ୍ୱାସ ଜନସାଧାରଣଙ୍କ ଅକୁଣ୍ଠ ସହଯୋଗ ଓ ସମର୍ଥନ ଦ୍ୱାରା ଏ ସବୁ କ୍ଷେତ୍ରରେ ଅଧିକରୁ ଅଧିକ ସଫଳତା ହାସଲ କରାଯାଇ ପାରିବ ।

ଆଜି ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ ମୋ ରାଜ୍ୟର ଅଗଣିତ ଭାଇଭଉଣୀ, ପୁଅଝିଅ ଓ ନାତିନାତୁଣୀଙ୍କୁ କହିବାର କଥା, ନିଜ ଭିତରୁ ସଂକୀର୍ଣ୍ଣ ସ୍ୱାର୍ଥ ଓ ମତଭେଦ ଦୂର କରି ଦେଶର ଓ ରାଜ୍ୟର ପ୍ରଗତି ପାଇଁ ତ୍ୟାଗ, ସେବା ଓ ଦେଶ ପ୍ରେମର ମନୋଭାବ ନେଇ ସମସ୍ତେ ଆଗେଇ ଆସନ୍ତୁ । ଆମର ସ୍ୱପ୍ନ ସାକାର ହେବ, ସ୍ୱାଧୀନତାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସାଧିତ ହେବ । ପ୍ରଭୁ ଜଗନ୍ନାଥ ଆମ ସମସ୍ତଙ୍କୁ ଆଶୀର୍ବାଦ କରନ୍ତୁ ।

'ଜୟହିନ୍ଦ' ।

# ସ୍ୱାଧୀନତା ଦିବସ ଉପଲକ୍ଷେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ **ଶ୍ରୀ ବୈରାଗୀ ଜେନାଙ୍କ** ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ଉପଲକ୍ଷେ ରାଜ୍ୟବାସୀଙ୍କୁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ସହ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛି ।

ସ୍ୱାଧୀନତାର ୪୭ ବର୍ଷ ପରେ ମଧ୍ୟ ଦେଶ ଆଜି ସଙ୍କଟଜନକ ସାମ୍ପ୍ରଦାୟିକ ଦଙ୍ଗା ଓ ହିଂସାର ବିଭୀଷିକାରୁ ମୁକ୍ତ ହୋଇପାରି ନାହିଁ । ଆମର ଗଣତାନ୍ତ୍ରିକ ମୂଲ୍ୟବୋଧ ବଢ଼ିବା ପରିବର୍ତ୍ତେ ଦିନକୁ ଦିନ ଅବକ୍ଷୟ ହେବାରେ ଲାଗିଛି । ତଥାପି ଏଥିରେ ଭାଙ୍ଗି ନପଡ଼ି ସମୟର ଆହ୍ୱାନକୁ ଗ୍ରହଣ କରି ନୂତନ ଶପଥ ସହ ଆମକୁ ପୁଣି ଆଗେଇ ଯିବାକୁ ହେବ ।

ଦେଶର ଏକତା ଓ ଅଖଣ୍ଡତାର ସୁରକ୍ଷା ପାଇଁ ଦେଶବାସୀ ଉତ୍ସର୍ଗୀକୃତ ଉଦ୍ୟମ କରିବା ପାଇଁ ମୁଁ ନିବେଦନ କରୁଛି ।

ଆଜିର ଏହି ପବିତ୍ର ଦିବସରେ ଆସନ୍ତୁ ଆମେ ପୁଣି ଥରେ ଦେଶର ସଂହତି ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ସୁରକ୍ଷା ପାଇଁ ଆତ୍ମୋତ୍ସର୍ଗ କରିବା ନିମନ୍ତେ ଶପଥ ଗ୍ରହଣ କରିବା ।



# ସମ୍ପାଦକୀୟ

## ସ୍ୱାଧୀନତା ଦିବସର ସଂକଳ୍ପ

ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଭାରତର ସମସ୍ତ ନାଗରିକଙ୍କ ପାଇଁ ଅଗଷ୍ଟ ପନ୍ଦର ତାରିଖଟି ଏକ ସ୍ମରଣୀୟ ଦିବସ । ୧୯୪୭ ମସିହାର ଏହି ଦିନରେ ଆମ ଦେଶ ପରାଧୀନତାର ଶୃଙ୍ଖଳ ଭିତରୁ ମୁକ୍ତ ହେବାର ସୌଭାଗ୍ୟ ଅର୍ଜନ କରିଥିଲା । ସୁତରାଂ ଆମେ ଆଜି ସ୍ୱାଧୀନତାର ୪୭ ବର୍ଷରେ ପଦାର୍ପଣ କରିବା ସୁଯୋଗ ପାଇଛୁ । ପରାଧୀନତାର ଘନ ଅନ୍ଧକାରକୁ ଦୂର କରି ଦେଶରେ ସ୍ୱାଧୀନତାର ଆଲୋକ ବିକିରଣ କରିଥିବା ଏହି ପବିତ୍ର ଦିନକୁ ସ୍ମରଣ କରିବା ସଙ୍ଗେ ସଙ୍ଗେ ଯେଉଁମାନଙ୍କ ଅସୀମ ତ୍ୟାଗ ଫଳରେ ଆମେ ଏହି ସୁଯୋଗ ପାଇଛୁ, ସେହି ପୂର୍ବ ସୂରୀମାନଙ୍କୁ ଏହି ଅବସରରେ ସ୍ମୃତିଚାରଣ କରି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥାଉ ।

ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ଅଗଣିତ ସଂଗ୍ରାମୀ ମହାପୁରୁଷଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ବେଳେ ସ୍ୱାଧୀନତା ସଂଗ୍ରାମର ଅମୋଘ ଅସ୍ତ୍ର ତଥା ଗାନ୍ଧିଜୀଙ୍କ ମୂଳ ମନ୍ତ୍ର "ଅହିଂସା" କଥା ସ୍ୱତଃ ମନେ ପଡିଯାଏ । ଏହି ଅହିଂସା ମାର୍ଗକୁ ଆଶ୍ରୟ କରି ବିଜୟୀ ହେବାରେ ଭାରତବର୍ଷ ହେଉଛି ପୃଥିବୀରେ ଅଦ୍ୱିତୀୟ । କିନ୍ତୁ ସମୟ ସ୍ରୋତରେ ଆଜି ସେ ଅବସ୍ଥାର ପରିବର୍ତ୍ତନ ଘଟିଛି । ଅହିଂସାକୁ ପାଥେୟ କରି ଜନ୍ମ ନେଇଥିବା ଭାରତରେ ଆଜି ହିଂସାର ପଥ ସୁଦୃଢ଼ ପ୍ରସାରୀ ହୋଇଯାଇଛି । ବିଚ୍ଛିନ୍ନତାବାଦ ନାମରେ ଜାତୀୟ ସଂହତି ଆଜି ବିପନ୍ନ । ସାମ୍ପ୍ରଦାୟିକତାବାଦ ନାମରେ ଆଜି ଜାତି ଜାତି ଭିତରେ ବିଭେଦର ପ୍ରାଚୀର ସୃଷ୍ଟି ହୋଇଛି । ଫଳତଃ ଗାନ୍ଧିଜୀଙ୍କ ପରିକଳ୍ପିତ ରାମ ରାଜ୍ୟ ଆଜି କେବଳ ସ୍ୱପ୍ନର ଗନ୍ତାଘରେ ପଡ଼ି ରହିଛି ।

ଏହି ସବୁ ବିଭିନ୍ନ ପ୍ରତିକୂଳ ବାତାବରଣ ସତ୍ତ୍ୱେ ଆମେ ଧୈର୍ଯ୍ୟର ସହ ଆଗେଇ ଯିବାକୁ ହେବ । **Turn the file. Learn the work** ନୀତିରେ ଆମେ ଆମର ଅତୀତକୁ ସିଂହାବଲୋକନ କଲେ ଅତୀତର ଇତିହାସ ପୃଷ୍ଠା ଭିତରୁ ଅନେକ ସୂତ୍ରର ସନ୍ଧାନ ପାଇପାରିବା, ଯାହାକି ଅସାଧ୍ୟ କାର୍ଯ୍ୟକୁ ମଧ୍ୟ ସାଧନ କରିବାରେ ମୁଖ୍ୟ ସହାୟକ ହେବ । ନିକଟ ଅତୀତରେ ଘଟିଯାଇଥିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ଏଥିର ଜ୍ୱଳନ୍ତ ନମୁନା ।

୧୯୯୦ ରାକ୍ଷୀ ପୂର୍ଣ୍ଣିମା ତିଥିରେ ପୁରୀ ଶ୍ରୀମନ୍ଦିରର ଶୀର୍ଷ ଭାଗରୁ ଚଉରୀ କୁଇଣ୍ଟାଲ ଓଜନର ଯେଉଁ ବିରାଟ ପଥର ଖଣ୍ଡ ଖସି ପଡ଼ିଲା, ତାହା ସମଗ୍ର ପୃଥିବୀରେ ଆଲୋଚ୍ୟ ଏବଂ ଆଶ୍ଚର୍ଯ୍ୟର ବିଷୟ ହୋଇ ପଡ଼ିଲା । ମନ୍ଦିରର ମରାମତି ଅସମ୍ଭବ ଏବଂ ମନ୍ଦିର ନିଶ୍ଚିତ ଭାବେ ଭାଙ୍ଗିପଡ଼ିବ ବୋଲି ସମସ୍ତେ ଆତଙ୍କିତ ହୋଇ ପଡ଼ିଲେ । କିନ୍ତୁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଏଥିରେ ବିଚଳିତ ନହୋଇ ଅତୀତ ଇତିହାସର ପୃଷ୍ଠା ଉନ୍ମୋଚନ କରି କହିଥିଲେ ଯେ, ଏହି ବୀର ଓଡ଼ିଆ ଜାତିର କୁଶଳୀ କାରିଗରମାନେ ଏହି ମନ୍ଦିର ନିର୍ମାଣ କରିପାରିଛନ୍ତି ଏବଂ ସେହି ବୀର ଓଡ଼ିଆ ଜାତି ଏବେ ବି ବଞ୍ଚିଛି । ମନ୍ଦିର ମରାମତି କରିବାରେ କୌଣସି ଅସୁବିଧା ନାହିଁ ବୋଲି ବିଜୁବାବୁଙ୍କ ଦମ୍ଭୋକ୍ତି ପରବର୍ତ୍ତୀ ସମୟରେ ପ୍ରମାଣିତ ହେଲା । ସମଗ୍ର ବିଶ୍ୱକୁ ଚକିତ କରି ଖୁବ୍ କମ୍ ଦିନ ଭିତରେ ସ୍ନାନ ପୂର୍ଣ୍ଣିମା ପୂର୍ବରୁ ଶ୍ରୀମନ୍ଦିରର ସମସ୍ତ ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା । ଓଡ଼ିଆ ଜାତି ପାଇଁ ଏହା କିଛି କମ୍ ଗୌରବର କଥା ନୁହେଁ ।

ସେହିଭଳି ଭାବରେ ଦେଶରେ ରାମ ରାଜ୍ୟ ପ୍ରତିଷ୍ଠା କରିବା ଆହ୍ୱାନ ସମସ୍ତେ ଦେଇ ଆସୁଥିଲେ ବି ଗାନ୍ଧିଜୀଙ୍କ ପରିକଳ୍ପିତ ରାମ ରାଜ୍ୟର ପ୍ରକୃତ ସଂଜ୍ଞା ନିରୂପଣ ପାଇଁ କେହି କେବେ ଇତିହାସ ପୃଷ୍ଠାକୁ ଓଲଟାଇ ନାହାନ୍ତି । ସଂକ୍ଷେପରେ କହିବାକୁ ଗଲେ କ୍ଷମତାର ବିକେନ୍ଦ୍ରୀକରଣ ହିଁ ପ୍ରକୃତ ରାମ ରାଜ୍ୟ । ସେଥିପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ରାଜ୍ୟରେ ତ୍ରିସ୍ତରୀୟ ଶାସନ ବ୍ୟବସ୍ଥା ପ୍ରଚଳନ କରିଛନ୍ତି । ଏହା ଫଳରେ ଗାଁର କୌଣସି ସମସ୍ୟା ସମ୍ପର୍କରେ ଆଉ ରାଜ୍ୟର ରାଜଧାନୀକୁ ଦଉଡ଼ିବାର ଆବଶ୍ୟକତା ପଡୁନାହିଁ । ଗାଁକୁ ସମସ୍ତଙ୍କ ସୁନ୍ଦର କରି ଗଢ଼ି ତୋଳିବା ପାଇଁ ଗାଁ ସରପଞ୍ଚ ହାତରେ ବିଜୁବାବୁ ବର୍ତ୍ତମାନ ଏହି ପଞ୍ଚାୟତି ରାଜ ବ୍ୟବସ୍ଥା ଜରିଆରେ ପ୍ରକୃତ କ୍ଷମତା ଅର୍ପଣ କରି ଦେଇଛନ୍ତି । କାରଣ, କ୍ଷମତାର ମୋହକୁ ନଛାଡ଼ିଲେ ରାମ ରାଜ୍ୟର ସନ୍ଧାନ ମିଳିବ ନାହିଁ ।

ସୁତରାଂ, ଗାନ୍ଧିଜୀଙ୍କ ପରିକଳ୍ପିତ ରାମ ରାଜ୍ୟର ସଫଳ ରୂପାୟନ କରିବାକୁ ହେଲେ ଆମେ ସମସ୍ତେ ବିଜୁବାବୁଙ୍କ ପନ୍ଥା ଅନୁସରଣ କରି ପ୍ରତ୍ୟେକେ କ୍ଷମତାର ମୋହଠାରୁ ଦୂରେଇ ଯାଇ ନିଜ ନିଜର ଦାୟିତ୍ୱ ପ୍ରତି ସଚେତନ ହେବା ଆବଶ୍ୟକ ।

ଦେଶ ଓ ଜାତି ପ୍ରତି ଆମର ଦାୟିତ୍ୱ ସମ୍ପର୍କରେ ସଚେତନ ହୋଇ ଆମେ ଆମର ତ୍ୟାଗ, ନିଷ୍ଠା ଓ ଉତ୍ସର୍ଗୀକୃତ ଉଦ୍ୟମ ଦ୍ୱାରା ରାମ ରାଜ୍ୟର ମୂଳଦୁଆ ସ୍ଥାପନ ପାଇଁ ସଂକଳ୍ପବଦ୍ଧ ହେବା – ଏହା ହିଁ ଆଜିର ଏହି ପବିତ୍ର ସ୍ୱାଧୀନତା ଦିବସର ସଂକଳ୍ପ ।

# କଠୋର ନିଷ୍ପତ୍ତି ହିଁ ପ୍ରଗତିର ଗୁରିକାଠି



* ଶ୍ରୀ ବିଜୁ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ

ଏହା ଦୁର୍ଭାଗ୍ୟଜନକ ଯେ ବ୍ୟୟ ସଙ୍କୋଚ ପାଇଁ ଦେଶର କୌଣସି ସରକାର କଠୋର ବ୍ୟବସ୍ଥା ଗ୍ରହଣ କରିବା ନିମନ୍ତେ ସାହସ କରିପାରି ନାହାନ୍ତି ଏବଂ ଦେଶର ଶହ ଶହ, ହଜାର ହଜାର ବ୍ୟକ୍ତି କୌଣସି ସୁବିଧା ପାଉ ନଥିବା ସ୍ଥଳେ ସରକାରରେ ଥିବା କୌଣସି ବ୍ୟକ୍ତି ନିଜର ସୁବିଧା ପରିହାର କରିବାକୁ ଚାହୁଁ ନାହାନ୍ତି । ସରକାର ଚଳାଇବା ଆଜିକାଲି ଅଧିକରୁ ଅଧିକ ବ୍ୟୟ ସାପେକ୍ଷ ହେଲାଣି । ବେସାମରିକ, ସାମରିକ ତଥା ପୋଲିସ୍ ପ୍ରଶାସନ କ୍ଷେତ୍ରରେ ଅଗଣିତ ଜନସାଧାରଣଙ୍କୁ ନିଯୁକ୍ତି ଦିଆଯାଇଛି । ସେମାନଙ୍କ ବ୍ୟୟ ଭାର କିଏ ବହନ କରୁଛି ? ଆର୍ଥିକ ଚାପରେ ଭାରାକ୍ରାନ୍ତ ହୋଇଥିବା ଆମ କରଦାତାଗଣ ।

ସରକାରୀ ଉଦ୍ୟୋଗରେ ପରିଚାଳିତ ନିଗମଗୁଡ଼ିକ ମଧ୍ୟ ଏଥିରୁ ବାଦ୍ ପଡ଼ି ନାହାନ୍ତି । ଏହି ନିଗମଗୁଡ଼ିକରେ ବହୁଳ ସଂଖ୍ୟାରେ ନିଯୁକ୍ତି ଦିଆଯାଇଛି । ଜଣେ କର୍ମଚାରୀର ଆବଶ୍ୟକତା କ୍ଷେତ୍ରରେ ୫ ଜଣଙ୍କୁ ନିଯୁକ୍ତି ଦିଆଯାଇଛି ଏବଂ ସଙ୍ଘ ଜରିଆରେ ସେମାନେ ଯଥୋଚିତ ଭାବରେ ସୁରକ୍ଷିତ । ଏଣୁ ସରକାର ଏହି ଅତିରିକ୍ତ କର୍ମଚାରୀଙ୍କୁ ବହିଷ୍କାର କରିବା ସ୍ୱାଭାବିକ ।

ଆମେ ଏଠାରେ ମେକ୍ସିକୋ ଦୃଷ୍ଟାନ୍ତ ଅବତାରଣା କରିବା । ସେଠାକାର ରାଷ୍ଟ୍ରପତି ବ୍ୟୟ ସଙ୍କୋଚ କ୍ଷେତ୍ରରେ ଏକ କଡ଼ା ନୀତି ଅନୁସରଣ କଲେ । ସେ କର୍ମଚାରୀ ସଙ୍ଘଗୁଡ଼ିକୁ ଭାଙ୍ଗି ଦେବା ଫଳରେ ମେକ୍ସିକୋ ବର୍ତ୍ତମାନ ପ୍ରଗତି ପଥରେ ଦ୍ରୁତ ଭାବରେ ଆଗେଇ ଚାଲିଛି । ସମୟ ଉପନୀତ ହେଲାଣି, ଯେଉଁ ସବୁ କ୍ଷେତ୍ରରେ ଆମେ କ୍ଷତିଗ୍ରସ୍ତ ହେଉଛେ ସେଥିରୁ ସରକାରୀ ସହାୟତା ପ୍ରତ୍ୟାହାର କରାଯିବା ଉଚିତ୍ ।

ଆମେ ଏଭଳି ଏକ ଦୟନୀୟ ଅବସ୍ଥାରେ ଆସି ପହଞ୍ଚି ଯାଇଛୁ ଯେ କର୍ମଚାରୀମାନଙ୍କର ମଜୁରି ଓ ବେତନ ଦେବା ଲାଗି ଆମେ କରଜ କରିବାକୁ ବାଧ୍ୟ ହେଉଛୁ । ଆମେ ଯଦି କିଛି ଯୋଜନା ବା ପ୍ରକଳ୍ପକୁ କାର୍ଯ୍ୟକାରୀ କରିବାକୁ ଚାହୁଁ ତେବେ ଆମକୁ ଅଧିକ ଖର୍ଚ୍ଚ କରିବାକୁ ପଡ଼ିବ । ଏଭଳି ପରିସ୍ଥିତିରେ ଶିକ୍ଷା, ସ୍ୱାସ୍ଥ୍ୟ ସେବା ଓ ଅନ୍ୟାନ୍ୟ ସାଧାରଣ ସେବା କାର୍ଯ୍ୟକ୍ରମ ନିମନ୍ତେ ଆବଶ୍ୟକ ହେଉଥିବା ଅର୍ଥ ଆମେ ଯୋଗାଇବା କ୍ଷେତ୍ରରେ ସମର୍ଥ ହୋଇପାରୁ ନାହୁଁ । କୋରିଆରେ ୪୫ ନିୟୁତ ଟନ୍ ଇସ୍ପାତ୍ ଉତ୍ପାଦନ କରିବା ପାଇଁ ୨୦ ହଜାର କର୍ମଚାରୀଙ୍କୁ ନିଯୁକ୍ତି ଦିଆଯାଉଥିବା ବେଳେ ଆମ ଦେଶରେ ୪୫ ନିୟୁତ ଟନ୍ ଇସ୍ପାତ୍ ଉତ୍ପାଦନ କରିବା ପାଇଁ ୩ ଲକ୍ଷ କର୍ମଚାରୀଙ୍କୁ ନିଯୁକ୍ତି ଦିଆଯାଉଛି ।

ଏଭଳି ଅବ୍ୟବସ୍ଥା ଭିତରେ କୌଣସି ଜାତି ବଞ୍ଚି ପାରେନା । ଆମର କର୍ମଚାରୀ ବହୁଳ ପ୍ରଶାସନ ବ୍ୟବସ୍ଥା ଅତ୍ୟନ୍ତ ବ୍ୟୟ ସାପେକ୍ଷ । ସମଗ୍ର ଦେଶରେ କେନ୍ଦ୍ର ଓ ରାଜ୍ୟରେ ଥିବା ଅମଲାତନ୍ତ୍ରର ମନୋଭାବ ପ୍ରଗତି ଓ ଜନ କଲ୍ୟାଣ ଦିଗରେ ଅନୁକୂଳ ନୁହେଁ । ଏଥିର ପରିବର୍ତ୍ତନ ପାଇଁ କୌଣସି ସ୍ତରରେ ଉଦ୍ୟମ ହେଉ ନାହିଁ । ସେମାନେ କେବଳ ପରମ୍ପରାର ଦୃଷ୍ଟାନ୍ତ ଓ କର୍ତ୍ତୃପକ୍ଷଙ୍କୁ ବିଭିନ୍ନ ଆଳ ଦେଖାଇ ନିଜର ସ୍ୱାର୍ଥ ଜାବୁଡ଼ି ଧରିଛନ୍ତି ।

ଦେଶର ରାଜନୈତିକ ବ୍ୟବସ୍ଥା ମଧ୍ୟ ଅଧିକ ବ୍ୟୟ ସାପେକ୍ଷ । ଦେଶର ପ୍ରଧାନମନ୍ତ୍ରୀ, ମନ୍ତ୍ରୀ ପରିଷଦ ଓ ସଂସଦର ରକ୍ଷଣାବେକ୍ଷଣ ଭାର ଆମ କରଦାତାଙ୍କର ପୁଞ୍ଜି ଉପରେ ହିଁ ନିର୍ଭର କରିଥାଏ । ସେମାନେ ଜନସାଧାରଣଙ୍କ ସେବା କରିବା ପରିବର୍ତ୍ତେ କେବଳ ଶାସକ ଭଳି କାର୍ଯ୍ୟ କରୁଛନ୍ତି । ଜଣେ ପାର୍ଲାମେଣ୍ଟ ସଦସ୍ୟ ବର୍ଷକୁ ୨୮ ଥର ବିମାନ ଯୋଗେ ନିଜ ନିର୍ବାଚନ ମଣ୍ଡଳୀକୁ ଗସ୍ତରେ ଯିବା ଏକ ହାସ୍ୟାସ୍ପଦ ବ୍ୟାପାର । ସେମାନଙ୍କର ଭତ୍ତା ମଧ୍ୟ ବଢ଼ି ଚାଲିଛି । ଜଣେ ପାର୍ଲାମେଣ୍ଟ ସଦସ୍ୟ ପ୍ରଶାସନିକ ସେବାର ଅର୍ନ୍ତଭୁକ୍ତ ନୁହଁନ୍ତି । ତଥାପି ସେମାନଙ୍କର ସ୍ତ୍ରୀ, ବିଧବା ମାଆ ଓ ପିଲାମାନେ ସରକାରଙ୍କଠାରୁ ସକଳ ପ୍ରକାରର ସୁବିଧା ଉପଭୋଗ କରି ଚାଲିଛନ୍ତି । ଦେଶର ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇ ନିର୍ଯ୍ୟାତନା ଭୋଗିଥିବା ମୋ ଭଳି ଜଣେ ବ୍ୟକ୍ତି ପକ୍ଷେ ଏହା ବାସ୍ତବରେ ଯନ୍ତ୍ରଣାଦାୟକ । ଆଜିର ଏହି ପୃଷ୍ଠପୋଷକତା ପଦ୍ଧତି ସବୁ ସ୍ତରରେ ଦୁର୍ନୀତିକୁ ଉତ୍ସାହିତ କରୁଛି । ବାସ୍ତବରେ କହିବାକୁ ଗଲେ ଆମେ ଯେଉଁ ବ୍ୟବସ୍ଥା ମଧ୍ୟରେ ରହିଛୁ ସେ ବ୍ୟବସ୍ଥା ପୁରାପୁରି ଦୁର୍ନୀତିଗ୍ରସ୍ତ, ଏପରି କି ଉଚ୍ଚତମ ସୋପାନରେ ଯେଉଁମାନେ ସବୁ ଅଛନ୍ତି ସେମାନେ ମଧ୍ୟ ଦୁର୍ନୀତିଗ୍ରସ୍ତ । ବାସ୍ତବରେ କହିବାକୁ ଗଲେ କ୍ଷମତା କେବଳ ଅର୍ଥ ଉପାର୍ଜନର ଏକ ମାଧ୍ୟମ ବୋଲି ସମସ୍ତଙ୍କର ସାଧାରଣ ଧାରଣା ।

ଦୁଇଟି ସନ୍ତାନରୁ ଅଧିକ ଥିବା ବ୍ୟକ୍ତି କୌଣସି ସରକାରୀ ଚାକିରି ବା ପଦୋନ୍ନତି କିମ୍ବା ନିର୍ବାଚିତ ପଦବୀ ପାଇଁ ଅଯୋଗ୍ୟ ବିବେଚିତ ହେବା ଉଚିତ — ଏଭଳି କଟକଣା ଜାହିର କରିବା ପରିବାର ନିୟନ୍ତ୍ରଣକୁ ଅଧିକ ପ୍ରୋତ୍ସାହନ ଦେଇ ଦେଶର ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ଲାଗି ନେହେରୁଜୀ ମଧ୍ୟ କେବେ ଗୁରୁତ୍ୱର ସହ ଚିନ୍ତା କରି ନଥିଲେ । ବାସ୍ତବରେ ଆମେ ଦେଶର ଜନସଂଖ୍ୟାକୁ ୩୪ କୋଟିରୁ ୯୦ କୋଟିକୁ ନେଇ ଆସିଛେ । ସମଗ୍ର ବିଶ୍ୱ ଆଜି ଆମକୁ ଉପହାସ କରୁଛି । ଅନ୍ୟ ଦେଶମାନଙ୍କର ମୁଣ୍ଡପିଛା ଆୟ ବଢୁଥିବା କ୍ଷେତ୍ରେ ଆମର ମୁଣ୍ଡପିଛା ଆୟ ହ୍ରାସ ପାଇବାରେ ଲାଗିଛି ଓ ଆମେ ପ୍ରତି ବର୍ଷ ଅଧିକରୁ ଅଧିକ ଗରିବ ହୋଇ ଚାଲିଛୁ ।

ସମୟ ଆସିଛି ଆମକୁ କଠୋର ନିଷ୍ପତ୍ତି ନେବାକୁ ପଡ଼ିବ । ଅବଶ୍ୟ ପ୍ରତିବାଦର ଧ୍ୱନି ଉଠିବ । ରାଜନୈତିକ ଗୋଷ୍ଠୀର ସୁବିଧା ପ୍ରତ୍ୟାହାର କରାଗଲେ "ନିରାପଦରେ" ଥିବା ଏହି ବ୍ୟକ୍ତିମାନେ ଲୋକ ପ୍ରତିନିଧି ନଥିବା ଭଳି ନିଜକୁ ନ୍ୟୁନ ମନେ କରିବେ । "ନିରାପଦ"ର ସଂଜ୍ଞା ଆମେ ଆଉ ଥରେ ନିରୁପଣ କରିବା । ଆଜି ଗୋଟିଏ ପିଅନ ପଦ ପାଇଁ ୯୦ ହଜାର ଆବେଦନ ପତ୍ର ପହଞ୍ଚିବାରେ ଲାଗିଛି । କାରଣ ସରକାରୀ ପଦବୀରେ ନିରାପତ୍ତା ରହିଛି 'ବୋଲି ସେମାନଙ୍କର ଧାରଣା । ସମ୍ବିଧାନର ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରତି କେନ୍ଦ୍ର ସରକାର ମଧ୍ୟ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ଉଚିତ । ଉଦାହରଣ ସ୍ୱରୂପ ଏହା ହାସ୍ୟାସ୍ପଦ ଯେ, କୃଷି ଏକ ରାଜ୍ୟ କର୍ତ୍ତୃତ୍ୱାଧୀନ ବିଷୟ ହୋଇଥିଲେ ହେଁ କେନ୍ଦ୍ର କୃଷି ମନ୍ତ୍ରଣାଳୟ ୪୦ ହଜାର କର୍ମଚାରୀଙ୍କୁ ନିଯୁକ୍ତି ଦେଇଛନ୍ତି । ଏହା କାହାର ସ୍ୱାର୍ଥ ପାଇଁ ?

ଅତୀତରେ କେହି ବିଶେଷ ସୁବିଧା ପାଉ ନଥିଲେ; ଏପରି କି ପ୍ରଧାନମନ୍ତ୍ରୀ ମଧ୍ୟ ନୁହେଁ । ମୋର ମନେ ଅଛି, ନେହେରୁଜୀଙ୍କ ବୋଲହାକ କରିବା ଲାଗି ତାଙ୍କ ନିକଟରେ କୌଣସି ପିଅନକୁ ନିଯୁକ୍ତି ଦିଆଯାଇ ନଥିଲା । କୌଣସି ଏକ ଅବସରରେ ରାତି ୮ଟା ସମୟରେ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲି । ମୁଁ ସେତେବେଳେ ରାଇଭଲିର ଏକ ଚମତ୍କାର ଚଳଚ୍ଚିତ୍ର ଦେଖି ଫେରିଥିଲି । ମୁଁ ସେ ଚଳଚ୍ଚିତ୍ର ସମ୍ପର୍କରେ ତାଙ୍କୁ କହିଲି ଓ ସେ ହଠାତ୍ ଏହି ଚଳଚ୍ଚିତ୍ରଟିକୁ ଦେଖିବା ଲାଗି ନିଷ୍ପତ୍ତି ନେଲେ । ତାଙ୍କର ବିଶ୍ୱସ୍ତ ସହକାରୀ ଶ୍ରୀ ମାଥାଇ କାର୍ ନକରି ଏକ ଟାକ୍ସି ଯୋଗେ ସିନେମା ଅଭିମୁଖେ ଗଲୁ । ମାତ୍ର ସେତେବେଳକୁ ଡ୍ରାଇଭର ନଥିଲା । ସେଥିରେ ଆମେ କୌଣସି ଚିନ୍ତା ନଥିଲା । ଏପରି କି ସିନେମା ହଲ୍ ନିକଟରେ ମଧ୍ୟ ବିଶୃଙ୍ଖଳା ନଥିଲା । ସେତେବେଳେ କୌଣସି ନିରାପତ୍ତା ବ୍ୟବସ୍ଥା ନିଆଯାଇ ନଥିଲା । ବରଂ ଲୋକମାନେ ତାଙ୍କୁ ଦେଖି ବହୁତ ଖୁସି ହେଲେ ।

ଆମର ଜୀବନ ଯାପନ ପ୍ରଣାଳୀ ଏଭଳି ଶସ୍ତା ହୋଇ ଯାଇଛି ଯେ ସେଥିପାଇଁ ଆମେ ନିଜେ ନିଜକୁ ଦୋଷୀ ମନେ କରିବା ଉଚିତ । ଆଜି ସମଗ୍ର ଦେଶରେ ଅଶାନ୍ତ ବାତାବରଣ କାହିଁକି ଦେଖାଯାଉଛି ? କାରଣ

ଆମ ଦେଶରୁ ବିଦେଶୀ ପୁଞ୍ଜିପତିମାନେ ବିଦାୟ ନେଇଥିଲେ ମଧ୍ୟ ଉଚିତ୍ ମୂଲ୍ୟରେ ୧୦ ଗୁଣା ଦେଇ ଆମେ ସାମଗ୍ରୀ କିଣିଥାଉ । ଏ ସ୍ୱାଧୀନତା ତା'ହେଲେ କାହିଁକି ? ଆମେ କ'ଣ ପରସ୍ପରଙ୍କୁ ନିନ୍ଦା କରିବା, ହତ୍ୟା କରିବା ଓ ଛୁରୀକା ଘାତ କରିବା ? ମୁଁ ପ୍ରତିକ୍ରିୟା ପ୍ରକାଶ କରୁନାହିଁ, କାରଣ ମୁଁ ଆବେଗଶୀଳ ନୁହେଁ । ତଥାପି ମୁଁ ଆଶା ପରିତ୍ୟାଗ କରି ନାହିଁ । ଏ ହେଉଛି ମୋର ଦେଶ । ମୁଁ ଏଠାରେ ଜନ୍ମ ନେଇଛି, ଏହା ପାଇଁ ସଂଗ୍ରାମ କରିଛି ଓ ଏହାର ସେବା ମଧ୍ୟ କରିଛି ।

ଆମ ଦେଶର ଜନସଂଖ୍ୟାର ଅର୍ଦ୍ଧେକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି । ସେମାନଙ୍କ ପାଇଁ ଖାଦ୍ୟ ନାହିଁ, ପାନୀୟ ଜଳର ବ୍ୟବସ୍ଥା ନାହିଁ, ଶିକ୍ଷା ନାହିଁ, ରହିବା ପାଇଁ ବାସଗୃହ ନାହିଁ ଓ ସେମାନେ ସାକ୍ଷର ନୁହଁନ୍ତି । ପ୍ରତି ବର୍ଷ ଏହିଭଳି ଦୁରାବସ୍ଥା ବଢ଼ି ଚାଲିଛି । ମୋତେ ଯଦି ଦେଶ ଚଳେଇବାକୁ କୁହାଯାଆନ୍ତା ଓ ମୋ ବୟସ ଯଦି ୩୦ ବର୍ଷ କମ୍ ହୋଇଥାନ୍ତା, ଦୁର୍ନୀତିର ଦୃଢ଼ ମୁକାବିଲା କରିବା ଲାଗି, ଦେଶରେ ଡ୍ରାକୋନିଆ ଆଇନ ପ୍ରବର୍ତ୍ତନ କରି ସମ୍ପୃକ୍ତ ବ୍ୟକ୍ତିଙ୍କୁ ଶାସ୍ତି ବିଧାନ କରିଥାନ୍ତି । ଯଦି କୌଣସି ବ୍ୟକ୍ତିଙ୍କର ୨ରୁ ଅଧିକ ସନ୍ତାନ ଥାନ୍ତି ସେଭଳି କ୍ଷେତ୍ରରେ ମୋତେ ତାଙ୍କ ପ୍ରତି କଠୋର ଶାସ୍ତି ବିଧାନ କରିବାକୁ ପଡ଼ିଥାନ୍ତା । ତାଙ୍କୁ ସରକାରୀ ଚାକିରି କିମ୍ବା ନିର୍ବାଚିତ ପଦବୀ ପାଇଁ, ଏପରି କି ପଞ୍ଚାୟତ ସ୍ତରରେ ନିର୍ବାଚିତ ପ୍ରତିନିଧି ଭାବେ ମଧ୍ୟ ଯୋଗ୍ୟ ବିବେଚିତ କରାଯାଇ ନଥାନ୍ତା । ଏ ଦିଗରେ ନିର୍ବାଚିତ ସଂସ୍ଥା ପ୍ରତିବନ୍ଧକ ସୃଷ୍ଟି କଲେ ତାହାକୁ ମୁଁ ଭାଙ୍ଗି ଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

ଏହି ପରିପ୍ରେକ୍ଷୀରେ ଆମକୁ ଦୃଢ଼ ନିଷ୍ପତ୍ତି ନେବାକୁ ହିଁ ପଡ଼ିବ । ମଣିଷ ତ୍ୟାଗ ସ୍ୱୀକାର ନକଲେ ଜାତିର ପ୍ରଗତି ଅସମ୍ଭବ । ପ୍ରତ୍ୟେକ ପ୍ରଗତି ପାଇଁ ଆତ୍ମବଳୀ ଆବଶ୍ୟକ ହୋଇଛି । ତେଣୁ ଦେଶର ବିକାଶ ପାଇଁ ଆମେ ତ୍ୟାଗ ସ୍ୱୀକାର କରିବାକୁ ଭୟଭୀତ କାହିଁକି ?

(ଟାଇମ୍ସ୍ ଅଫ୍ ଇଣ୍ଡିଆ ସୌଜନ୍ୟରୁ)




ପଞ୍ଚାୟତି ରାଜ ଓ ଗ୍ରାମ୍ୟ ଉନ୍ନୟନ ପାଠ୍ୟକ୍ରମ ଉଦ୍‌ଯାପନୀ ଉତ୍ସବରେ ପଞ୍ଚାୟତି ରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତଙ୍କ ଅଭିଭାଷଣ (୧୦/୭) ।



# ଗାଈ ମୁହଁରେ କ୍ଷୀର

* ଶ୍ରୀ ସୂର୍ଯ୍ୟ ନାରାୟଣ ପାଢ଼ୀ

କୃଷି ଓ ଗୋ–ପାଳନ ଆମର ପ୍ରଧାନ ଅବଲମ୍ବନ। ବହୁ ପ୍ରାଚୀନ କାଳରୁ ଏହା ଆମର ନିତିଦିନିଆ ଜୀବନ ସହିତ ଜଡ଼ିତ। ପୂର୍ବରୁ ଆମେ କ୍ଷୀର, ଦହି ଏବଂ ଘରେ ଦୁଗ୍ଧ ବ୍ୟବହାର କରିବା ପାଇଁ ଗୋ–ପାଳନ କରୁଥିଲୁ। କିନ୍ତୁ ଯୁଗ ବଦଳିବା ସଙ୍ଗେ ସଙ୍ଗେ ଆମ ଚିନ୍ତାଧାରା ମଧ୍ୟ ବଦଳିବାରେ ଲାଗିଛି। ଏବେ ଦୁଧିଆଳୀ ଗାଈ ପାଳନ କରି ଲୋକମାନେ ନିଜର ପରିବାର ଭରଣ ପୋଷଣ କରିବା ସହିତ ନିଜର ଆର୍ଥିକ ଅବସ୍ଥାର ମଧ୍ୟ ଉନ୍ନତି କରିପାରୁଛନ୍ତି। ଏଥିପାଇଁ ଲୋକମାନେ ଦେଶୀ ଗାଈ ପାଳନ ନକରି ଉନ୍ନତ ବା ସଙ୍କର ଗାଈ ପାଳନ କରିବାକୁ ଅଧିକ ଆଗ୍ରହୀ ହେଉଛନ୍ତି।

ଦୁଧିଆଳୀ ଗାଈ ପାଇଁ ସୁଷମ ଖାଦ୍ୟ ନିହାତି ଦରକାର। ତେଣୁ ଅଧିକ କ୍ଷୀର ପାଇବା ପାଇଁ ସେମାନଙ୍କର ଖାଦ୍ୟ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ପଡ଼ିବ। ଗୋରୁମାନଙ୍କ ଖାଦ୍ୟକୁ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ କରାଯାଇଛି। ଗୋଟିଏ ହେଲା ମୋଟାରୋଟା ଖାଦ୍ୟ ଏବଂ ଅନ୍ୟଟି ହେଲା ସୁଷମ ଖାଦ୍ୟ। ସୁଷମ ଖାଦ୍ୟ ଗୋରୁମାନଙ୍କୁ ଖୁଆଇବା କୃଷୀ ପକ୍ଷରେ ବ୍ୟୟ ସାପେକ୍ଷ ହୋଇଥିବାରୁ ଗାଁ ଗହଳିରେ କୃଷୀ ଭାଇମାନେ ଗାଈ ଗୋରୁମାନଙ୍କୁ ଅଧିକ ପରିମାଣରେ ମୋଟାରୋଟା ଖାଦ୍ୟ ଦିଅନ୍ତି। ଏହି ମୋଟାରୋଟା ଖାଦ୍ୟ ଗୋରୁ ଗାଈଙ୍କ ହଜମ ପ୍ରକ୍ରିୟାରେ ମଧ୍ୟ ସାହାଯ୍ୟ କରେ। ଗାଁ ଗହଳିରେ ନଡ଼ା ବା ପାଳକୁ ସାଧାରଣତଃ ମୋଟାରୋଟା ଖାଦ୍ୟ ଭାବରେ ଗୋରୁ ଗାଈଙ୍କୁ ଦିଆଯାଏ। କିନ୍ତୁ ଏଥିରେ କୌଣସି ଖାଦ୍ୟ ଗୁଣ ନଥିବା ଯୋଗୁଁ ଏହା ଗୋରୁ ଗାଈଙ୍କ ବିଶେଷ ଉପକାରରେ ଲାଗେ ନାହିଁ। ତେଣୁ ସେମାନଙ୍କ ପାଇଁ ସବୁଜ ଘାସ ହିଁ ଏକମାତ୍ର ବିକଳ୍ପ ପୁଷ୍ଟିସାର ଯୁକ୍ତ ସୁସ୍ୱାଦୁ ଆହାର। ଏଥିରେ ଭିଟାମିନ୍ ବା ଖାଦ୍ୟପ୍ରାଣ ଓ ଧାତବ ଲବଣ ଅଧିକ ପରିମାଣରେ ରହିଥିବାରୁ ସବୁଜ ଘାସ କେବଳ ଯେ ଗାଈଙ୍କର ପୁଷ୍ଟିକର ଖାଦ୍ୟ ଭାବରେ ପରିଗଣିତ ହୁଏ, ତାହା ନୁହେଁ ଏହାକୁ ଖୁଆଇଲେ ଗାଈର ଦୁଗ୍ଧ ଦେବା କ୍ଷମତା ମଧ୍ୟ ବୃଦ୍ଧି ଘଟିଥାଏ। ପରୀକ୍ଷାରୁ ଜଣାଯାଇଛି ଯେ, ଛଅ ଲିଟର ପର୍ଯ୍ୟନ୍ତ କ୍ଷୀର ଦେଉଥିବା ଗାଈମାନଙ୍କୁ ଦୈନିକ ତିରିଶରୁ ପଇଁତିରିଶ କିଲୋ ସବୁଜ ଘାସ ଖୁଆଇଲେ ଆଉ ଦାନା ଦେବାକୁ ପଡ଼ିନଥାଏ। ଯାହା ଦେଖାଯାଉଛି ଆମ ଗାଁ ଗହଳିରେ କୃଷୀ ଭାଇମାନେ ଗାଈମାନଙ୍କୁ ଚରିବା ପାଇଁ ପଦାକୁ ଛାଡ଼ିଦିଅନ୍ତି। କିନ୍ତୁ ବର୍ଷା ଋତୁକୁ ଛାଡ଼ିଦେଲେ ସେମାନେ ଅନ୍ୟ ସମୟରେ ସବୁଜ ଚରା ପାଆନ୍ତି ନାହିଁ। ତେଣୁ ଗାଈମାନଙ୍କ କ୍ଷୀର କମିଯାଏ ଓ ତାଙ୍କଠାରୁ ବେଶୀ ଲାଭ ମିଳିନଥାଏ।

ତେଣୁ ଗାଈ ପାଳିବାକୁ ହେଲେ କୃଷୀ ଭାଇମାନଙ୍କୁ ସବୁଜ ଘାସ ଚାଷ କରିବାକୁ ହିଁ ପଡ଼ିବ। ପ୍ରତି ଦିନ ସବୁଜ ଘାସ ପାଇବାକୁ ହେଲେ ନିଜ ବାଡ଼ିରେ କିମ୍ବା ଜମିରେ ସବୁଜ ଘାସ ଚାଷ କରିବା ନିହାତି ଦରକାର। ଏଥିପାଇଁ ରାଜ୍ୟ ପଶୁ ପାଳନ ବିଭାଗ ତରଫରୁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ ହେଉଛି ଓ କୃଷୀମାନଙ୍କ ଆଗ୍ରହ ବୃଦ୍ଧି କରିବା ପାଇଁ ବିଭିନ୍ନ ପ୍ରକାର ସାହାଯ୍ୟ ମଧ୍ୟ ଦିଆଯାଉଛି। ଆମ ରାଜ୍ୟରେ ଘାସ ଚାଷକୁ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ପ୍ରତି ବ୍ଲକ୍‌ରେ କୃଷୀମାନଙ୍କୁ ମାଗଣାରେ ଘାସ ମଞ୍ଜି, ମୂଳ ଓ ସବାବୁଲ ଏବଂ ଅଗସ୍ତି ପ୍ରଭୃତି ଗୋ–ଖାଦ୍ୟ ଗଛର ଚାରା ଯୋଗାଇ ଦିଆଯାଉଛି। କୃଷୀ ଭାଇମାନେ ଅନ୍ତତଃ ପକ୍ଷେ ନିଜ ଘରବାଡ଼ିରେ ଯଦି ୭୦୦ଟି ହାଇବ୍ରିଡ୍ ନେପିୟର୍ ମୂଳ ଓ ୫୦ଟି ସୁବାବୁଲ ଗଛର ଚାରା ଲଗାନ୍ତି, ତାହାହେଲେ ଗୋଟିଏ କିମ୍ବା ଦୁଇଟି ଗାଈଙ୍କୁ ବର୍ଷସାରା ସବୁଜ ଗୋ–ଖାଦ୍ୟ ଯୋଗାଇ ଦେଇ ପାରିବ। ଏହାଛଡ଼ା ମିନିକିଟ୍ ଯୋଜନା ଅନୁସାରେ ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଯଥା–କୋରାପୁଟ, ରାୟଗଡ଼ା, ନବରଙ୍ଗପୁର, ମାଲକାନାଗିରି, ଫୁଲବାଣୀ, ମୟୂରଭଞ୍ଜ, କେନ୍ଦୁଝର ଓ ସୁନ୍ଦରଗଡ଼ର ଆଗ୍ରହୀ କୃଷୀମାନଙ୍କୁ ଖରିଫ୍ ଋତୁରେ ୪୦୦ ଗୋଟି ଘାସ ପ୍ରଦର୍ଶନ କ୍ଷେତ୍ର ଓ ୭ ହଜାର ମିନିକିଟ୍ ଯୋଗାଇ ଦିଆଯିବ। ଏହାଛଡ଼ା ଆସନ୍ତା ରବି ଋତୁରେ ଏହି ସବୁ ଜିଲ୍ଲାମାନଙ୍କରେ ୧,୪୫୦ ଗୋଟି ମିନିକିଟ୍ ଯୋଗାଇ ଦେବାର ବ୍ୟବସ୍ଥା ରହିଛି। ଚଳିତ ଆର୍ଥିକ ବର୍ଷରେ ଅଣଆଦିବାସୀ ଜିଲ୍ଲାଗୁଡ଼ିକରେ ବର୍ଷସାରା ଘାସ ହୋଇପାରୁଥିବା ୧,୨୫୦ ଗୋଟି ଘାସ ପ୍ରଦର୍ଶନ କ୍ଷେତ୍ର ତିଆରି କରାଯିବା ସଙ୍ଗେ ସଙ୍ଗେ ୧୨,୦୦୦ ଖରିଫ୍ ମିନିକିଟ୍ ଯୋଗାଇ ଦିଆଯିବାର ଲକ୍ଷ୍ୟ ରହିଛି। ଏହାଛଡ଼ା ରବି ଋତୁରେ ୪,୨୫୦ ଗୋଟି ମିନିକିଟ୍ ମଧ୍ୟ ଯୋଗାଇ ଦିଆଯିବାର ପ୍ରସ୍ତାବ ରହିଛି। ରାଜ୍ୟରେ ଥିବା ଘାସ ମଞ୍ଜି ଉତ୍ପାଦନ ଫାର୍ମମାନଙ୍କୁ ଅଧିକ ସୁଦୃଢ଼ କରାଯାଇ ରାଜ୍ୟର ଆବଶ୍ୟକତା ମୁତାବକ ଘାସ ମଞ୍ଜି ଉତ୍ପାଦନର ଲକ୍ଷ୍ୟ ରଖାଯାଇଛି।

ତେଣୁ ଘାସ ଚାଷ କରିବାକୁ ହେଲେ ଚାଷୀମାନଙ୍କୁ ତାହାର ଚାଷ ପ୍ରଣାଳୀ ସମ୍ବନ୍ଧରେ ବିଶେଷ ଜ୍ଞାନ ଅର୍ଜନ କରିବାକୁ ହିଁ ପଡ଼ିବ । ସେଥିପାଇଁ ଆମର ଚାଷୀମାନଙ୍କୁ ଘାସ ଚାଷ ପ୍ରଣାଳୀ ସମ୍ବନ୍ଧରେ ଘାସ ଚାଷ ତାଲିମ ଦିଆଯିବାର ବ୍ୟବସ୍ଥା ରହିଛି । ଚଳିତ ବର୍ଷ ଆଦିବାସୀ ଜିଲ୍ଲାମାନଙ୍କରେ ୮୦୦ ଚାଷୀଙ୍କୁ ତାଲିମ ଦେବାର ଲକ୍ଷ୍ୟ ରଖାଯାଇଛି । ଏହାଛଡ଼ା ପ୍ରତି ସଘନ ଗୋ-ଉନ୍ନୟନ ଯୋଜନା ଅଞ୍ଚଳରେ ୨୦୦ ଚାଷୀଙ୍କୁ ମଧ୍ୟ ତାଲିମ ଦିଆଯିବାର କାର୍ଯ୍ୟକ୍ରମ ରଖାଯାଇଛି । ଏସବୁ ଛଡ଼ା ବିଶ୍ୱ ବ୍ୟାଙ୍କ୍ ସହାୟତାରେ ମଧ୍ୟ ଆମ ରାଜ୍ୟରେ ଘାସ ଚାଷ କରାଯିବାର ବ୍ୟାପକ ବ୍ୟବସ୍ଥା ହୋଇପାରିଛି ।

ଘାସ ଚାଷର ଉପାଦେୟତା ଓ ଏଥିପାଇଁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସମ୍ବନ୍ଧରେ ମୁଁ ମୋର ଚାଷୀ ଭାଇମାନଙ୍କୁ ଅନୁରୋଧ କରୁଛି ଯେ, ସେମାନେ ନିଜ ବାଡ଼ିରେ କିମ୍ବା ଜମିରେ ଘାସ ଚାଷ କରନ୍ତୁ ଏବଂ ନିଜ ଗାଈଙ୍କୁ ପ୍ରତିଦିନ କିଛି ସବୁଜ ଘାସ ଯୋଗାଇ ଦିଅନ୍ତୁ । ଆମର ଚାଷୀ ଭାଇମାନେ ମନେ ରଖନ୍ତୁ ଯେ "ଗାଈ ମୁହଁରେ କ୍ଷୀର" ।

---

ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ମନ୍ତ୍ରୀ,




ଭୁବନେଶ୍ୱରଠାରେ ଆୟୋଜିତ ରାଜଧାନୀ ଓକିଲ ସଂଘର ବାର୍ଷିକ ଉତ୍ସବରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ଏକ ପତ୍ରିକା ଉନ୍ମୋଚନ କରୁଛନ୍ତି (୨୩/୭) ।

# ସବୁଜ ବିପ୍ଳବ ପାଇଁ ପ୍ରମାଣିତ ବିହନର ଆବଶ୍ୟକତା

* ଶ୍ରୀ ବିକ୍ରମ କେଶରୀ ବର୍ମା

ଓଡ଼ିଶା ମୁଖ୍ୟତଃ କୃଷି ପ୍ରଧାନ ରାଜ୍ୟ ହୋଇଥିବାରୁ ଓ ରାଜ୍ୟର ପ୍ରାୟ ଅଶୀ ଭାଗ ଲୋକ କୃଷି ଉପରେ ନିର୍ଭର କରୁଥିବାରୁ, ଏ ରାଜ୍ୟର ପ୍ରଗତି ପାଇଁ ସବୁଜ ବିପ୍ଳବର ଆବଶ୍ୟକତା ସର୍ବାଧିକ, ଏହା ଅନସ୍ୱୀକାର୍ଯ୍ୟ । କିନ୍ତୁ ଦୁଃଖର ବିଷୟ ଆମର ପଡ଼ୋଶୀ ରାଜ୍ୟ ଆନ୍ଧ୍ର ଓ ପଶ୍ଚିମ ବଙ୍ଗଠାରୁ ଓଡ଼ିଶା କୃଷି କ୍ଷେତ୍ରରେ ବହୁତ ପଛରେ ପଡ଼ିଛି ।

ସବୁଜ ବିପ୍ଳବର ସଫଳତା ପାଇଁ ଉନ୍ନତ ମାନର ଅଧିକ ଅମଳକ୍ଷମ ପ୍ରମାଣିତ ବିହନର ଆବଶ୍ୟକତା ଅପରିହାର୍ଯ୍ୟ । କିନ୍ତୁ ଆମ ରାଜ୍ୟରେ ଯେତିକି ବିହନ ଆବଶ୍ୟକ ତାହାର ପ୍ରାୟ ପାଞ୍ଚ ଭାଗ ପ୍ରମାଣିତ ଉନ୍ନତ ଅମଳକ୍ଷମ ବିହନ ଯୋଗାଇ ଦିଆଯାଇ ପାରୁଛି । ଅନ୍ୟୂନ ୯୫ ଭାଗ ବିହନ ଆମର କୃଷୀମାନେ ରଖୁଥିବା ପାରମ୍ପରିକ ବିହନ, ଯାହାର ଅଧିକ ଅମଳ ଦେବାର ଶକ୍ତି ନାହିଁ । ଓଡ଼ିଶାର କୃଷୀମାନେ ସେମାନଙ୍କର ପାରମ୍ପରିକ ବିହନ ଉପରେ ନିର୍ଭର କରୁଥିବାରୁ ଯେତେ ଖତ, ସାର ଦେଲେ ମଧ୍ୟ ଅଧିକ ଉତ୍ପାଦନ ହୋଇପାରୁ ନାହିଁ । ଏଠାରେ ଗୋଟିଏ ଛୋଟିଆ ଉଦାହରଣ ଦେଲେ ଯଥେଷ୍ଟ ହେବ ୧୦୦୯ କିସମର ପ୍ରମାଣିତ ଧାନ ବିହନ କୃଷୀ ବିଲରେ ପ୍ରୟୋଗ କଲେ ଏକ ଗୁଣ୍ଠ ଜମିରେ କଟକ ଗଉଣୀରେ ୩୫ ଗଉଣୀ ଧାନ ଉତ୍ପାଦନ କରୁଥିବା ବେଳେ ତାହାର ପାରମ୍ପରିକ ଧାନ ବିହନ ବୁଣି ଯେତେ ଖତ, ସାର ଦେଲେ ମଧ୍ୟ ଗୁଣ୍ଠ ବାର ତେରହ ଗଉଣୀରୁ ଅଧିକ ଅମଳ କରିବା ସମ୍ଭବ ନୁହେଁ । ଏକ ଗୁଣ୍ଠ ଜମିରେ ବାର ଗଉଣୀ ଧାନ ଫଳିଲେ ବଢ଼ିଆ ଧାନ ହୋଇଛି ବୋଲି ଆଗେ କୃଷୀ ଆତ୍ମସନ୍ତୋଷ ଲାଭ କରୁଥିଲା । କିନ୍ତୁ ଏବେ ୧୦୦୯, ୧୦୧୮ ଓ ୧୦୧୪ ବା ସ୍ୱର୍ଣ୍ଣ କିସମର ପ୍ରମାଣିତ ଧାନ ବିହନ ଅମଳ କରି ଗୁଣ୍ଠ ୩୦ ଗଉଣୀରୁ ୪୦ ଗଉଣୀ ମଧ୍ୟରେ ଧାନ ଅମଳ କରିବାରୁ ସେ ଚକିତ ହୋଇଯାଉଛି । କେବଳ ବିହନ ପରିବର୍ତ୍ତନ ଫଳରେ କୃଷୀ କେତେ ଲାଭବାନ ହେଉଛି ତାହା ସହଜରେ ଅନୁମେୟ ।

ଓଡ଼ିଶାର ଅଶୀ ଭାଗ ଜମିରେ ଜଳସେଚନର ସୁବିଧା ନଥିବାରୁ ପ୍ରତି ବର୍ଷ ମରୁଡ଼ି ଦେଖାଯାଇଥାଏ । କଳାହାଣ୍ଡି, କୋରାପୁଟ, ବାଲେଶ୍ୱର, କେଉଁଝର, ମୟୂରଭଞ୍ଜ ଆଦି ମରୁଡ଼ିଗ୍ରସ୍ତ ଜିଲ୍ଲାମାନଙ୍କରେ ଲଘୁପାକ ଧାନ ଯଥା—କଳିଙ୍ଗ-୩, ପାରିଜାତ, ପଥରା, ମୋତି, ଅନ୍ନଦା ଆଦି ତିନି କିସମର ଧାନ ବିହନ ପ୍ରୟୋଗ କଲେ ମରୁଡ଼ିରେ ଧାନ ଫସଲ କ୍ଷତିଗ୍ରସ୍ତ ହେବାର ଆଶଙ୍କା ଖୁବ୍ କମ୍ । କାରଣ ଅକ୍ଟୋବର ପୂର୍ବରୁ ଏ ସବୁ ଧାନ ଅମଳ ହୋଇଥାଏ । ଯେଉଁ ଜମିରେ କୃଷୀମାନେ ବିଆଳୀ ଧାନ କରିଥାନ୍ତି, ସେ ସବୁ ଜମିରେ ଏ ସବୁ ଧାନ ହୋଇପାରିବ ।

ବିଆଳୀ ଧାନ କୃଷୀ ଗୁଣ୍ଠ ପାଞ୍ଚ ଛଅ ଗଉଣୀ ଅମଳ କରୁଥିବା ବେଳେ ଏ ଧାନ ଗୁଣ୍ଠ ପନ୍ଦର କୋଡ଼ିଏ ଗଉଣୀ ଫଳିଥାଏ, ଫଳରେ କୃଷୀ ୩ ଗୁଣା ଲାଭ ପାଉଛି ଏହା ସଙ୍ଗେ ସଙ୍ଗେ ମରୁଡ଼ି ଜନିତ କ୍ଷତିରୁ ରକ୍ଷା ପାଇପାରିଥାଏ ।

ପାହାଡ଼ିଆ .ମାଳ ଅଞ୍ଚଳରେ ମିଶ୍ରିତ କୃଷି କରାଯାଇ ପାରିବ । ହରଡ଼ ସହ ଚିନାବାଦାମ କୃଷି ହୋଇପାରିବ ଓ ଏଥିପାଇଁ ଜଳର ଆବଶ୍ୟକତା ବେଶୀ ନଥିବାରୁ ଏ ସବୁ ଅଞ୍ଚଳରେ ଧାନ କୃଷିକୁ ବେଶୀ ପ୍ରୋତ୍ସାହିତ ନକରି ମିଶ୍ରିତ କୃଷିକୁ ପ୍ରୋତ୍ସାହିତ କରିବା ଦରକାର । ସୁନ୍ଦରଗଡ଼ ଜିଲ୍ଲାରେ ମିଶ୍ରିତ କୃଷି ଅଧିକ ଭଲ ହେଉଛି । କିନ୍ତୁ ସେଠାକୁ ଉନ୍ନତ ଅମଳକ୍ଷମ ହରଡ଼ ଓ ଚିନାବାଦାମ ବିହନ ଯୋଗାଇ ଦିଆନଗଲେ ସେ ମିଶ୍ରିତ କୃଷି ବା କିପରି କରିପାରିବ ?

ବାଲେଶ୍ୱର ଓ ସମ୍ବଲପୁର ଜିଲ୍ଲାରେ ସୋରିଷ କୃଷି ଭଲ ଭାବରେ ହୋଇପାରୁଛି । ସାଧାରଣ ସୋରିଷ ବିହନ ଅପେକ୍ଷା ଅଧିକ ଅମଳକ୍ଷମ ପ୍ରମାଣିତ ସୋରିଷ ବିହନ ଅଧିକ ଉତ୍ପାଦନ ହେବ ଏଥିରେ ସନ୍ଦେହ ନାହିଁ । କଟକ, ପୁରୀ, ବାଲେଶ୍ୱର, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାରେ ଚିନାବାଦାମ କୃଷି ବ୍ୟାପକ ଭାବରେ କରାଯାଉଛି । ଯଥା ସମୟରେ ଉନ୍ନତ ମାନର ଚିନାବାଦାମ ବିହନ ଯୋଗାଇ ଦିଆଯାଉଥିବାରୁ ଏହା ଉନ୍ନତ ହେଉଛି ।

ଧାନ ତୈଳବୀଜ ବିହନରେ ଓଡ଼ିଶା ସ୍ୱାବଲମ୍ବୀ ହୋଇଥିଲେ ମଧ୍ୟ ଡାଲି ଜାତୀୟ ଓ ପନିପରିବା ବିହନ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ସ୍ୱାବଲମ୍ବୀ ହୋଇପାରି ନାହିଁ । ହରଡ଼, ବି-୯ ଜାତି ବିହନ ଓ ଉନ୍ନତ ମାନର ମୁଗ ବିହନ ଏବେ ବି ବାହାରୁ ଅଣାଯାଉଛି ।

ପନିପରିବା ବିହନର ଶତକଡ଼ା ଏକ ଭାଗ ମଧ୍ୟ ଓଡ଼ିଶାରେ ଉତ୍ପାଦନ ହୋଇପାରୁନି । ଓଡ଼ିଶାରେ ପନିପରିବା ଚାଷର ବ୍ୟାପକ ସୁବିଧା ଥିଲେ ମଧ୍ୟ ସେଥିପ୍ରତି ଯେତିକି ଗୁରୁତ୍ୱ ଦିଆଯିବା କଥା ତାହା ଦିଆଯାଉ ନାହିଁ । ତେଣୁ ଆଳୁଠାରୁ କୋବି ପର୍ଯ୍ୟନ୍ତ ପନିପରିବା ପାଇଁ ଆମେ ପଡ଼ୋଶୀ ରାଜ୍ୟ ଉପରେ ନିର୍ଭର କରୁଛେ । ପନିପରିବା ଅର୍ଥକରୀ ଫସଲ ହୋଇଥିବାରୁ ଏହାଦ୍ୱାରା ଚାଷୀ ବିପୁଳ ଅର୍ଥ ଲାଭ କରିପାରିବ ଏଥିରେ ସନ୍ଦେହ ନାହିଁ । ଏ ପର୍ଯ୍ୟନ୍ତ ଓଡ଼ିଶାରେ ଉଦ୍ୟାନ ବିଭାଗ ପନିପରିବା ମଞ୍ଜି ଉତ୍ପାଦନ, ବିକ୍ରୟ ବ୍ୟବସ୍ଥା କାର୍ଯ୍ୟକାରୀ କରୁଥିଲା । ଏ ବର୍ଷଠାରୁ ରାଜ୍ୟ ବିହନ ନିଗମ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାରେ ମୋଟ୍ ୨୬ଟି ବିହନ ବିକ୍ରୟ କେନ୍ଦ୍ରରେ ପନିପରିବା ବିହନ ବିକ୍ରୟ ଦାୟିତ୍ୱ ହାତକୁ ନେଇଛି । ଚାଷୀ କ୍ଷେତରେ ଓ ବିହନ ନିଗମର ଫାର୍ମରେ ମଧ୍ୟ ପନିପରିବା ବିହନ ଉତ୍ପାଦନ ପାଇଁ ବିହନ ନିଗମ କାର୍ଯ୍ୟ ଆରମ୍ଭ କରିଛି ।

ବିହନ ଉତ୍ପାଦନ ପରେ ପ୍ରସ୍ତୁତିକରଣ ଓ ସଂରକ୍ଷଣ ପାଇଁ ରାଜ୍ୟ ବିହନ ନିଗମ ପକ୍ଷରୁ ଭୁବନେଶ୍ୱର, କଟକ, ସମ୍ବଲପୁର, ବରଗଡ଼, ବାଲେଶ୍ୱର, ବ୍ରହ୍ମପୁର, ଜୟପୁରଠାରେ ପ୍ରୋସେସିଂ ପ୍ଲାଣ୍ଟମାନ ବସାଯାଇଛି ଓ ଏବେ ଚନ୍ଦକାଠାରେ ଚିନାବାଦାମ ବିହନ ସଂରକ୍ଷଣ ପାଇଁ କେନ୍ଦ୍ର ସରକାରଙ୍କ ଅନୁଦାନ ଦ୍ୱାରା ଦଶ ହଜାର କ୍ୱିଣ୍ଟାଲ୍ ବାଦାମ ବର୍ଷା ଋତୁରେ ରଖାଯାଇ ପାରିବା ପାଇଁ ଏକ ଶୀତତାପ ଜଳୀୟ ନିୟନ୍ତ୍ରିତ ବିହନ ଭଣ୍ଡାର ୮୦ ଲକ୍ଷ ଟଙ୍କା ବ୍ୟୟରେ ତିଆରି ହୋଇଛି ।

ଚାଷୀମାନଙ୍କୁ ପ୍ରମାଣିତ ବିହନ ସୁବିଧାରେ ଯୋଗାଇ ଦେବା ପାଇଁ କୃଷି ବିଭାଗ ପକ୍ଷରୁ ପ୍ରତି ବ୍ଲକ୍‌ରେ ୨ଟି ଲେଖାଏଁ ବିହନ ବିକ୍ରୟ କେନ୍ଦ୍ର ଖୋଲାଯାଇଛି । ଏହା ବ୍ୟତୀତ କେତେକ କେନ୍ଦ୍ର ଛକୀରେ ରାଜ୍ୟ ବିହନ ନିଗମ ପକ୍ଷରୁ ଏ ବର୍ଷ ବିହନ ବିକ୍ରୟ କେନ୍ଦ୍ର ସ୍ଥାପନ ହୋଇ ଚାଷୀମାନଙ୍କୁ ବିହନ ଯୋଗାଇ ଦିଆଯାଇଛି ।

ଏ ସବୁ ଯୋଜନାକୁ ଫଳପ୍ରସୂ କରିବା ପାଇଁ ଚାଷୀମାନଙ୍କର ସକ୍ରିୟ ସହଯୋଗ ରାଜ୍ୟ ବିହନ ନିଗମ କାମନା କରୁଛି ।

ଅଧ୍ୟକ୍ଷ,
ରାଜ୍ୟ ବିହନ ନିଗମ ।




ସୂଚନା ଭବନଠାରେ ଆୟୋଜିତ ସାପ୍ତାହିକ 'ଅନୁସନ୍ଧାନ'ର ୪ର୍ଥ ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ (୭/୫) ।

# ଜିଲ୍ଲା ପୁନର୍ଗଠନ ପ୍ରକ୍ରିୟାର ୨ୟ ପର୍ଯ୍ୟାୟରେ ଆଉ ୧୦ଟି ନୂତନ ଜିଲ୍ଲା ସୃଷ୍ଟି – ସମ୍ବେଦନଶୀଳ ପ୍ରଶାସନର ଏକ ଐତିହାସିକ ବିଜୟ

* ଶ୍ରୀ ଚଣ୍ଡୀ ପ୍ରସାଦ ମହାନ୍ତି

> "ଯୋଜନା ପ୍ରକ୍ରିୟାରେ ଜନସାଧାରଣ ସାମିଲ ନ ହେବାଯାଏଁ ଓ ସେମାନେ ପ୍ରଶାସନର ନିକଟତମ ନହେବା ପର୍ଯ୍ୟନ୍ତ ଯୋଜନାର ସୁଫଳ ମିଳି ପାରିବ ନାହିଁ ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ଅଚିରେ ପରାହତ ହେବ ।"
>
> –ପଣ୍ଡିତ ଜବାହରଲାଲ ନେହେରୁ

ସମଗ୍ର ରାଜ୍ୟରେ ଜିଲ୍ଲା ପୁନର୍ଗଠନ ଫଳରେ ଆଜି ଯେଉଁ ଆଲୋଡ଼ନ ସୃଷ୍ଟି ହୋଇଛି ତାହା ସରକାରଙ୍କ ସୁଦୂରପ୍ରସାରୀ ଚିନ୍ତାଧାରା, ବୌଦ୍ଧିକ ଦୃଷ୍ଟିଭଙ୍ଗୀ ଓ ସମ୍ବେଦନଶୀଳ ଗଣତାନ୍ତ୍ରିକ ମନୋଭାବର ନିଖୁଣ ଚିତ୍ର ପ୍ରଦାନ କରେ ।

ସଂକ୍ଷିପ୍ତ ଟିପ୍ପଣୀ

| [illegible] | [illegible] | [illegible] | [illegible] | [illegible] |
|---|---|---|---|---|
| (୧) କଟକ | [illegible] | [illegible] | କଟକ | (କ) କଟକ<br>(ଖ) ଜଗତସିଂହପୁର<br>(ଗ) କେନ୍ଦ୍ରାପଡ଼ା<br>(ଘ) [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |
| [illegible] | [illegible] | [illegible] | [illegible] | [illegible] |

ଇତି ମଧ୍ୟରେ କେତୋଟି ଦଶନ୍ଧି ଅତିକ୍ରାନ୍ତ ହୋଇଗଲାଣି । ଜନସାଧାରଣ ଯୋଜନା ପ୍ରକ୍ରିୟାରେ ନିଜକୁ ସାମିଲ କରିବା ଦିଗରେ ବ୍ୟର୍ଥ ହୋଇଛନ୍ତି ଓ ଯୋଜନାର ସୁଫଳ ସେମାନଙ୍କର ନିକଟରୁ ଦୂରେଇ ଯାଇଛି । ଏହିଭଳି ଏକ ଗୁରୁତ୍ୱପୂର୍ଣ୍ଣ ଚିନ୍ତାରେ ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଭାରାକ୍ରାନ୍ତ ହୋଇ ପଡ଼ିଲେ। ଜନସାଧାରଣଙ୍କ ନିକଟରେ ଯୋଜନାର ସୁଫଳକୁ ପହଞ୍ଚେଇବାକୁ ପଡ଼ିବ ଓ ସେମାନଙ୍କୁ ପ୍ରଶାସନର ନିକଟତମ କରିବାକୁ ପଡ଼ିବ । ଏହି ଚିନ୍ତାଧାରା ତାଙ୍କୁ ବିଶେଷ ବିବ୍ରତ କଲା । କ୍ଷେତ୍ର ପରିଚାଳନା ସ୍ୱୟଂଶାସିତ ନହେଲେ ପ୍ରଶାସନିକ ଦକ୍ଷତା ବୃଦ୍ଧି ପାଇବ ନାହିଁ ଓ ଜନସାଧାରଣଙ୍କୁ ପ୍ରଶାସନର ନିକଟତମ କରି ହେବନାହିଁ । ଏଣୁ ଜିଲ୍ଲାଗୁଡ଼ିକୁ ସ୍ୱୟଂଶାସିତ ନକଲେ ଜନସାଧାରଣଙ୍କ ନିକଟକୁ ପ୍ରଗତିର ବାର୍ତ୍ତା ପହଞ୍ଚାଇ ହେବନାହିଁ । ଏଣୁ ରାଜ୍ୟରେ ଥିବା ବଡ଼ ବଡ଼ ଜିଲ୍ଲାଗୁଡ଼ିକୁ ସ୍ୱୟଂଶାସିତ କରି ପ୍ରଗତିର ଗତିକୁ ଅଧିକ କ୍ରିୟାଶୀଳ କରିବା ଲାଗି ସେ ନୀତିଗତ ଭାବେ ସ୍ଥିର କଲେ ।

ଏପ୍ରିଲ୍ ୧ ତାରିଖ ଓଡ଼ିଶାବାସୀଙ୍କ ଲାଗି ଏହା ଏକ ସ୍ମରଣୀୟ ମୁହୂର୍ତ୍ତ । ବିଗତ ୫୭ ବର୍ଷ ତଳେ ଆଜିର ଏହି ଶୁଭ ମୁହୂର୍ତ୍ତରେ ଓଡ଼ିଶା ଜନ୍ମ ନେଲା ଏକ ସ୍ୱାଧୀନ ପ୍ରଦେଶ ଭାବେ । ଏଥିଲାଗି ଆମର ବରେଣ୍ୟ ନେତାମାନଙ୍କର ଦାନ ଅବିସ୍ମରଣୀୟ । ଏହି ପ୍ରାତଃ ସ୍ମରଣୀୟ ଦିବସରେ ଆମର ବରେଣ୍ୟ ମୁଖ୍ୟମନ୍ତ୍ରୀ ଜିଲ୍ଲା ପୁନର୍ଗଠନର ଶୁଭ ଉଦ୍ଘାଟନ କଲେ । ଜନସାଧାରଣଙ୍କର ବହୁ ଦିନର ଆଶା ଆକାଂକ୍ଷା ସେହିଦିନ ପୂରଣ ହେଲା । ପ୍ରଶାସନିକ କ୍ଷେତ୍ରରେ ଆଉ ଅସୁବିଧା ରହିବ ନାହିଁ, ପ୍ରଗତିର ଚକ ଆହୁରି ଗତିଶୀଳ ହୋଇ ଉଠିବ ଏହି ଆଶାରେ ଆଶାୟୀ ହୋଇ ଉଠିଲେ ନବଗଠିତ ଜିଲ୍ଲାର ଜନସାଧାରଣ । ବହୁ ହର୍ଷଉତ୍ଫୁଲ୍ଲ ଓ କରତାଳି ମଧ୍ୟରେ ନବଗଠିତ ଜିଲ୍ଲାଗୁଡ଼ିକର ଉଦ୍‌ଘାଟନ କଲେ ଆମର ପ୍ରିୟ

* ପ୍ରଥମ ପଞ୍ଚ ବାର୍ଷିକ ଯୋଜନାର ଉଦ୍‌ଘାଟନୀ ଅଭିଭାଷଣରେ ପ୍ରାକ୍ତନ ପ୍ରଧାନମନ୍ତ୍ରୀଙ୍କ ବକ୍ତବ୍ୟ ।

ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ । ପ୍ରଗତିର ଏକ ନୂତନ ଅଧ୍ୟାୟର ଉନ୍ମେଷ ଘଟିଲା ଓ ଏକ ନୂତନ ଯୁଗର ଆଭ୍ୟୁଦୟ ହେଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜିଲ୍ଲାଗୁଡ଼ିକର ପୁନର୍ଗଠନ କାର୍ଯ୍ୟକ୍ରମ ସ୍ୱୟଂ ସମ୍ପୂର୍ଣ୍ଣ କରିବା ଲାଗି ୨/୩ ବର୍ଷ ଲାଗି ଯାଇପାରେ । ମାତ୍ର ବିଭାଜିତ ଜିଲ୍ଲାଗୁଡ଼ିକରେ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଯେପରି ବାଧାପ୍ରାପ୍ତ ନହୁଏ ସେଥିପ୍ରତି ସରକାର ବିହିତ ଧ୍ୟାନ ଦେଉଛନ୍ତି ।

ଏହି ପରିପ୍ରେକ୍ଷୀରେ ଅମଲାତାନ୍ତ୍ରିକ ଦାୟିତ୍ୱ ହସ୍ତାନ୍ତର ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ନୂତନ ଜିଲ୍ଲାଗୁଡ଼ିକର ସାମ୍ପ୍ରତିକ ଅବସ୍ଥାରେ ଯେଉଁ ସବୁ ଅଭାବ ଅସୁବିଧାମାନ ପରିଲକ୍ଷିତ ହେଉଛି ସେ ସବୁକୁ ଦୂରାଇବା ଲାଗି ସରକାର ବେଶ୍ ଯତ୍ନବାନ । ମାତ୍ର ସାମ୍ପ୍ରତିକ ସ୍ଥିତାବସ୍ଥାକୁ ବଜାୟ ରଖି ପ୍ରଶାସନିକ ଦାୟିତ୍ୱ ସୁରୁଖୁରୁରେ ସମ୍ପାଦନ କରିବା ଲାଗି ସରକାର ନବନିଯୁକ୍ତ ଜିଲ୍ଲାପାଳ ଓ ଅତିରିକ୍ତ ଜିଲ୍ଲାପାଳ ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ବର୍ତ୍ତମାନ ପରିପ୍ରେକ୍ଷୀରେ ନୂତନ ଜିଲ୍ଲାଗୁଡ଼ିକର ଯେଉଁସବୁ ଅଭାବ ଅସୁବିଧାମାନ ପରିଲକ୍ଷିତ ହେଉଛି ତାହା ନିମ୍ନରେ ପ୍ରଦତ୍ତ ହେଲା :

(କ) କାର୍ଯ୍ୟାଳୟ, କୋଠାବାଡ଼ି ସମୂହ

(ଖ) ଜିଲ୍ଲାରେ କାର୍ଯ୍ୟ କରିବା ଲାଗି ଆବଶ୍ୟକ ପଦାଧିକାରୀ ଓ କର୍ମଚାରୀ ବୃନ୍ଦଙ୍କ ନିଯୁକ୍ତି ଓ ଜିଲ୍ଲାର ଚାକିରି ପାହ୍ୟାର ପୁନର୍ଗଠନ ।

(ଗ) ସମ୍ପୃକ୍ତ ଜିଲ୍ଲାକୁ ଆବଶ୍ୟକ ମତେ ଗାଡ଼ି ଡ୍ରାଇଭର ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଯୋଗାଣ ।

(ଘ) ଟ୍ରେଜେରୀ ବ୍ୟବସ୍ଥା

(ଙ) ବଜେଟ ଅଟକଳ ଓ ହିସାବ ନିକାଶର ବିଭାଜୀକରଣ ।

(ଚ) ଆବଶ୍ୟକ ନଥିପତ୍ରଗୁଡ଼ିକର ହସ୍ତାନ୍ତର ।

(ଛ) ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ନଥିପତ୍ରଗୁଡ଼ିକର ହସ୍ତାନ୍ତର ।

(ଜ) ଜିଲ୍ଲାରେ ପଡ଼ି ରହିଥିବା ଅନୁସନ୍ଧାନମୂଳକ ବ୍ୟାପାର ଓ ଶୃଙ୍ଖଳାଗତ ମାମଲାଗୁଡ଼ିକର ଫଇସଲା ।

(ଝ) ବିଚାର ବିଭାଗୀୟ ଅନୁଷ୍ଠାନଗୁଡ଼ିକ ନୂତନ ପରିପ୍ରେକ୍ଷୀରେ କିପରି କାର୍ଯ୍ୟ କରିବେ ସରକାରୀ ଓକିଲ ଓ ଅନ୍ୟାନ୍ୟ ଓକିଲଙ୍କର ସୁବିଧା ।

(ଞ) ଲୋକଙ୍କର ଅସୁବିଧା ପ୍ରତି ଦୃଷ୍ଟିଦେବା ଓ ନ୍ୟାୟ ବିଚାର ପାଇଁ ଆସୁଥିବା ସାଧାରଣ ଲୋକମାନେ ସମ୍ପୃକ୍ତ ବ୍ୟବସ୍ଥା ସମ୍ପର୍କରେ ବିସ୍ତୃତ ଭାବେ ଜାଣିବା ।

(ଟ) ଜିଲ୍ଲା ଯୋଜନାଗୁଡ଼ିକର ସଂଶୋଧିତ ବଜେଟ ଅଟକଳି ପ୍ରସ୍ତୁତି ।

(ଠ) ଜିଲ୍ଲା ଗ୍ରାମ ଉନ୍ନୟନ ସଂସ୍ଥା, ସମନ୍ୱିତ ଆଦିବାସୀ ସଂସ୍ଥାଗୁଡ଼ିକର ପୁନର୍ଗଠନ ଓ ଆବଶ୍ୟକ ସ୍ଥଳେ ଆନୁଷଙ୍ଗିକ ଆଇନଗୁଡ଼ିକର ସଂଶୋଧନ ।

(ଡ) ଜିଲ୍ଲାସ୍ତରୀୟ କମିଟି ଓ ବୋର୍ଡ଼ଗୁଡ଼ିକର ପୁନର୍ଗଠନ ।

ନବଗଠିତ ଜିଲ୍ଲାଗୁଡ଼ିକର ମାନଚିତ୍ର ପ୍ରସ୍ତୁତ କରିବା ଲାଗି ଆବଶ୍ୟକ କାର୍ଯ୍ୟ ପନ୍ଥାମାନ ଗ୍ରହଣ କରାଯାଇଛି । ଏତଦ୍ ବ୍ୟତୀତ ପୁଲିସ୍ ଷ୍ଟେସନ୍‌ଗୁଡ଼ିକର ପରିସୀମା ନିର୍ଦ୍ଧାରଣ କରିବା ଲାଗି ଆବଶ୍ୟକ ବିଜ୍ଞପ୍ତି ପ୍ରକାଶ କରିବା ନିମନ୍ତେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି । ମାତ୍ର ବିଭାଜିତ ନୂତନ ଜିଲ୍ଲା ଓ ପୁରାତନ ତଥା ମୂଳ ଜିଲ୍ଲାଗୁଡ଼ିକରେ ଯେଉଁ ସବୁ ସୁବିଧା ସୁଯୋଗ ରହିଆସିଛି ସେସବୁକୁ ଉଭୟ ଜିଲ୍ଲା ସଦୁପଯୋଗ କରିପାରିବେ ବୋଲି କଡ଼ାକଡ଼ି ନିର୍ଦ୍ଦେଶ ରହିଛି । ଏହି ସୁବିଧା ସୁଯୋଗଗୁଡ଼ିକ ମଧ୍ୟରେ ଜିଲ୍ଲା ଜେଲ୍, ଜିଲ୍ଲା ଅଗ୍ନିଶମ ସେବା, ଜିଲ୍ଲା କମ୍ପ୍ୟୁଟର କେନ୍ଦ୍ର ପ୍ରଭୃତି ଅନ୍ତର୍ଭୁକ୍ତ । ଏତଦ୍ ବ୍ୟତୀତ ଜିଲ୍ଲା ପୁନର୍ଗଠନ ଓ ଅମଲାତାନ୍ତ୍ରିକ ଦାୟିତ୍ୱ ହସ୍ତାନ୍ତର କ୍ଷେତ୍ରରେ ସରକାରଙ୍କ ରାଜସ୍ୱ ବିଭାଗ, ସାଧାରଣ ପ୍ରଶାସନ ବିଭାଗ, ଯୋଜନା ଓ ସମନ୍ୱୟ ବିଭାଗ, ଅର୍ଥ ବିଭାଗ, ପଞ୍ଚାୟତରାଜ ବିଭାଗ, ହରିଜନ ଓ ଆଦିବାସୀ କଲ୍ୟାଣ ବିଭାଗ ଓ ଜଙ୍ଗଲ ବିଭାଗ ପ୍ରଭୃତି ଆବଶ୍ୟକ ସାହାଯ୍ୟ ସହଯୋଗ ଯୋଗାଇ ଦେବା ସଙ୍ଗେ ସଙ୍ଗେ ବିଭାଜିତ ଜିଲ୍ଲାଗୁଡ଼ିକୁ ଯେପରି ସ୍ୱୟଂ ସମ୍ପୂର୍ଣ୍ଣ କରାଯାଇ ପାରିବ, ସେଥି ନିମନ୍ତେ ତୁରନ୍ତ ବିହିତ କାର୍ଯ୍ୟାନୁଷ୍ଠାନମାନ ଗ୍ରହଣ କରିବା ଲାଗି ସମ୍ପୃକ୍ତ ବିଭାଗୀୟ ମୁଖ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ଆରଃ ଡ଼ିଃ ସିଃ ଓ ନୂତନ ଜିଲ୍ଲାପାଳ, ବିଭାଗୀୟ ମୁଖ୍ୟ, ଜିଲ୍ଲାସ୍ତରୀୟ ପଦାଧିକାରୀମାନଙ୍କ ଲାଗି ଏକ ତନଖି ତାଲିକା (CHECK-LIST) ପ୍ରସ୍ତୁତ କରିବା ଲାଗି ସମ୍ପୃକ୍ତ ଅଫିସରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଏହା ଫଳରେ ଅମଲାତାନ୍ତ୍ରିକ ଦାୟିତ୍ୱ ହସ୍ତାନ୍ତର ବ୍ୟାପାରଟି ସୁରୁଖୁରୁରେ ସମ୍ପନ୍ନ ହୋଇପାରିବ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଅମଲାତାନ୍ତ୍ରିକ କ୍ଷମତା ହସ୍ତାନ୍ତର କ୍ଷେତ୍ରରେ ନୀତିଗତ ଭାବେ ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିମାନ ଗ୍ରହଣ କରାଯାଇଛି ସେ ସବୁ ସରକାରଙ୍କର ରାଜସ୍ୱ ବିଭାଗ, ସାଧାରଣ ପ୍ରଶାସନ ବିଭାଗ, ଅର୍ଥ ବିଭାଗ, ସ୍ୱରାଷ୍ଟ୍ର ବିଭାଗ ଓ ଆଇନ୍ ବିଭାଗ ଦ୍ୱାରା ଅନୁମୋଦନ ଲାଭ ହୋଇଛି ।

ଏହାଛଡ଼ା ପୁନର୍ଗଠନ ପ୍ରକ୍ରିୟା ଅନୁଧ୍ୟାନ କରିବା ଲାଗି ସମ୍ପୃକ୍ତ ଆରଃ ଡ଼ିଃ ସିଃ, ରାଜସ୍ୱ ବୋର୍ଡ଼ ଓ ରାଜସ୍ୱ ବିଭାଗକୁ ଅମଲାତାନ୍ତ୍ରିକ ଆଦେଶନାମା ଜାରି ହୋଇଛି । ଏହା ଫଳରେ ଅମଲାତାନ୍ତ୍ରିକ କ୍ଷମତା ହସ୍ତାନ୍ତର ହେବା ସଙ୍ଗେ ସଙ୍ଗେ ଆବଶ୍ୟକୀୟ ସାମଗ୍ରୀ ହସ୍ତାନ୍ତର କ୍ଷେତ୍ରରେ ମଧ୍ୟ କୌଣସି ବାଧା ଉପୁଜିବ ନାହିଁ । ଅମଲାତାନ୍ତ୍ରିକ କ୍ଷମତା ହସ୍ତାନ୍ତର ଯେପରି ସୁରୁଖୁରୁରେ ହୁଏ ସେ ସବୁ ତଦାରଖ କରିବା ଲାଗି କେତେକ ଗୁରୁତ୍ୱପୂର୍ଣ୍ଣ ବିଭାଗର ଶାସନ ସଚିବଙ୍କୁ ନେଇ ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଛି ।

## (୧) ଅନୁଗୁଳ ଜିଲ୍ଲା :

ରାଜ୍ୟର କେନ୍ଦ୍ର ସ୍ଥଳରେ ଅବସ୍ଥିତ ଅନୁଗୁଳ ଜିଲ୍ଲା ଐତିହାସିକ ଦୃଷ୍ଟିକୋଣରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜିଲ୍ଲାର ଜନସାଧାରଣ ଏକଦା ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଯେପରି ନିଜର

ସ୍ୱତନ୍ତ୍ରତା ରକ୍ଷା କରିପାରିଥିଲେ ସେଥିରୁ ସେମାନଙ୍କର ସ୍ୱଦେଶ ଭାବ ପ୍ରୀତି ସହଜରେ ଅନୁମେୟ । ପୂର୍ବରୁ ଏହି ଜିଲ୍ଲାଟି ଢେଙ୍କାନାଳ ଜିଲ୍ଲାର ଏକ ଅଂଶ ବିଶେଷ ହୋଇ ରହିଥିଲା । ପ୍ରଶାସନିକ ଦୃଷ୍ଟିକୋଣରୁ ଢେଙ୍କାନାଳ ଜିଲ୍ଲାକୁ ବିଭାଜିତ କରି ଅନୁଗୁଳକୁ ଏକ ସ୍ୱତନ୍ତ୍ର ଜିଲ୍ଲା ରୂପେ ଘୋଷଣା କରାଗଲା । ଜିଲ୍ଲାର ଲୋକ ସଂଖ୍ୟା ସମ୍ପ୍ରତି ୯,୫୮,୦୦୩ ଓ ଏହାର ଭୌଗୋଳିକ ପରିସୀମା ୬,୩୪୭ ବର୍ଗ କିଲୋମିଟର । ଏହି ଜିଲ୍ଲାର ଅଧୀନରେ ୪ଟି ସବ୍‌ଡିଭିଜନ୍ କାର୍ଯ୍ୟକରୁଅଛି ଏ ସେଗୁଡ଼ିକ ହେଲା ଅନୁଗୁଳ, ତାଳଚେର, ପାଲଲହଡ଼ା ଓ ଆଠମଲ୍ଲିକ । ଜିଲ୍ଲାର ତାଳଚେର ସବ୍‌ଡିଭିଜନରେ ଯଥେଷ୍ଟ ପରିମାଣର କୋଇଲା ଗଚ୍ଛିତ ହୋଇରହିଛି । ଏଥିରେ ତାପଜ ବିଦ୍ୟୁତ୍ କେନ୍ଦ୍ର, ସାର ନିଗମ, ଜାତୀୟ ଆଲୁମିନିୟମ୍ କାରଖାନା, ଗୁରୁଜଙ୍ଗ କାରଖାନା ଓ ଅନ୍ୟାନ୍ୟ ବହୁ ବୃହତ୍ତମ ମଧ୍ୟମ ଶିଳ୍ପାନୁଷ୍ଠାନ ଗଢ଼ି ଉଠିଛି । ତାଳଚେରଠାରେ ଏକ ଜାତୀୟ ତାପଜ୍ ବିଦ୍ୟୁତ୍ ନିଗମ ଭଳି ଏକ ସୁପର ତାପଜ କାରଖାନା ପ୍ରତିଷ୍ଠା କରାଯାଇଛି । ସହରର ଚତୁଃପାର୍ଶ୍ୱରେ ହାଣ୍ଡିଧୁଆ, ବଳାଣ୍ଡା, ଡେରା ଓ ଦେଉଳବେଡ଼ା କୋଇଲାଖଣିମାନ ରହିଛି । ସମ୍ପ୍ରତି ଅନୁଗୁଳକୁ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଜିଲ୍ଲା ରୂପେ ଘୋଷଣା କରାଯିବା ଫଳରେ ଜିଲ୍ଲାରେ ରହି ଆସୁଥିବା ବିଭିନ୍ନ ପ୍ରଶାସନିକ ପ୍ରତିବନ୍ଧକଗୁଡ଼ିକ ଅଚିରେ ଦୂର ହୋଇପାରିବ ଓ ପ୍ରଗତିର ଗତି ଅଧିକ କ୍ରିୟାଶୀଳ ହୋଇପାରିବ ।

## (୨) ଭଦ୍ରଖ ଜିଲ୍ଲା :

ଓଡ଼ିଶା ପ୍ରଦେଶ ଗଠନ ହେବା ପରଠାରୁ ଭଦ୍ରଖ ସବ୍‌ଡିଭିଜନ ବାଲେଶ୍ୱର ଜିଲ୍ଲା ସହିତ ସଂଯୁକ୍ତ ହୋଇ ରହି ଆସିଛି । ଏହି ଜିଲ୍ଲାର ଉତ୍ତରରେ ୨୦°୪୩' ଓ ୨୧°୫୯' ଅକ୍ଷାଂଶ ଓ ପୂର୍ବରେ ୮୬°୧୬' ଓ ୮୭°୨୫' ଦ୍ରାଘିମା ମଧ୍ୟରେ ଅବସ୍ଥିତ । ଏହି ଜିଲ୍ଲାର ପଶ୍ଚିମରେ ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାର ପାର୍ବତ୍ୟ ଅଞ୍ଚଳ, ଦକ୍ଷିଣରେ କଟକ ଜିଲ୍ଲା ଓ ଉତ୍ତରରେ ପଶ୍ଚିମବଙ୍ଗର ମେଦିନପୁର ଜିଲ୍ଲା ଅବସ୍ଥିତ । ଏହି ଜିଲ୍ଲାର ଲୋକସଂଖ୍ୟା ହେଉଛି ୧,୦୩,୮୮୨ ଓ ଏହାର ଭୌଗୋଳିକ ପରିସୀମା ହେଉଛି ୨,୬୮୮ ବର୍ଗ କିଲୋମିଟର । ଏହି ଜିଲ୍ଲାଟି ଭଦ୍ରଖ ସବ୍‌ଡିଭିଜନକୁ ନେଇ ଗଠିତ । ଏହି ଜିଲ୍ଲାର ସଦର ମହକୁମା ହେଉଛି ଭଦ୍ରଖ । ଐତିହାସିକ ପର୍ଯ୍ୟଟନ ଦୃଷ୍ଟିକୋଣରୁ ଜିଲ୍ଲାର ବୈଶିଷ୍ଟ୍ୟ ବେଶ୍ ପ୍ରଣିଧାନଯୋଗ୍ୟ । ଏହି ଜିଲ୍ଲାର ସାକ୍ଷରତା ହାର ଅନ୍ୟାନ୍ୟ ଜିଲ୍ଲାଗୁଡ଼ିକ ତୁଳନାରେ ବେଶ୍ ଉଲ୍ଲେଖଯୋଗ୍ୟ । ପ୍ରଶାସନିକ ଦୃଷ୍ଟିକୋଣରୁ ବାଲେଶ୍ୱର ଜିଲ୍ଲାକୁ ବିଭାଜିତ କରି ଭଦ୍ରଖ ସବ୍‌ଡିଭିଜନକୁ ଏକ ଜିଲ୍ଲା ପାହ୍ୟା ଦିଆଗଲା । ଏହା ଫଳରେ ଜିଲ୍ଲାର ଜନସାଧାରଣଙ୍କୁ ପ୍ରଶାସନର ନିକଟତମ କରାଯିବା ସଙ୍ଗେ ସଙ୍ଗେ ଯୋଜନା ପ୍ରକ୍ରିୟାରେ ସେମାନଙ୍କୁ ପ୍ରତ୍ୟକ୍ଷ ଭାବେ ସାମିଲ କରିବା ଲାଗି ସୁଯୋଗ ଦିଆଗଲା । ଏହା ଫଳରେ ସମଗ୍ର ଜିଲ୍ଲାରେ ଏକ ଅନୁକୂଳ ପ୍ରଶାସନିକ ବାତାବରଣ ସୃଷ୍ଟି ହେବା ଯୋଗୁଁ ଯୋଜନା ପ୍ରକ୍ରିୟା ବିଶେଷ ଭାବରେ ଗତିଶୀଳ ହୋଇପାରିବ ।

## (୩) ବରଗଡ଼ ଜିଲ୍ଲା :

ସମ୍ବଲପୁର ଜିଲ୍ଲାର ଏକ ଗୁରୁତ୍ୱପୂର୍ଣ୍ଣ ସବ୍‌ଡିଭିଜନ ଭାବରେ ବରଗଡ଼ ଜିଲ୍ଲା ବହୁଦିନ ରହି ଆସିଥିଲା । ଜିଲ୍ଲାର ଶସ୍ୟଭଣ୍ଡାର ରୂପେ ଖ୍ୟାତି ଲାଭ କରିଥିବା ବରଗଡ଼ ଜିଲ୍ଲାଟିର ଜନସଂଖ୍ୟା ୧୨,୦୩,୬୩୦ ଓ ଏହାର ଭୌଗୋଳିକ ପରିସୀମା ୫,୮୩୨ । ଏହି ଜିଲ୍ଲାର ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ସଂଖ୍ୟା ଯଥାକ୍ରମେ ୨ ଲକ୍ଷ ୮ ହଜାର ଓ ୨ ଲକ୍ଷ ୩୦ ହଜାର ଅଟେ । ଏହି ଜିଲ୍ଲାର ସାକ୍ଷର ସଂଖ୍ୟାର ମୋଟ ପରିମାଣ ହେଉଛି ୪ ଲକ୍ଷ ୪୦ ହଜାର । ଏହି ଜିଲ୍ଲାରେ ୧୨ଟି ବ୍ଲକ୍ ୮ଟି ତହସିଲ ଓ ୫ଟି ବିଧାନ ସଭାମଣ୍ଡଳୀ ରହିଛି । ଏଥିରେ ୧୯୬ ଗୋଟି ଗ୍ରାମପଞ୍ଚାୟତ ଅନ୍ତର୍ଭୁକ୍ତ । ଏହି ଜିଲ୍ଲାରେ ବରଗଡ଼ ଓ ପଦ୍ମପୁର ନାମକ ୨ଟି ସବ୍‌ଡିଭିଜନ୍ ରହିଛି । ବରଗଡ଼ର ମୋଟ ରାଜସ୍ୱ ଆୟ ହେଉଛି ୨ କୋଟି ୬ ଲକ୍ଷ ଟଙ୍କା । ପଦ୍ମପୁର ସବ୍‌ଡିଭିଜନ୍‌ର ବାର୍ଷିକ ରାଜସ୍ୱ ୩୬ ଲକ୍ଷ ଟଙ୍କା । ସାଂସ୍କୃତିକ ଦୃଷ୍ଟିକୋଣରୁ ଜିଲ୍ଲାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ପ୍ରଶାସନିକ ଦୃଷ୍ଟିକୋଣରୁ ବରଗଡ଼ ସବ୍‌ଡିଭିଜନକୁ ଜିଲ୍ଲା ପାହ୍ୟା ଦିଆଯିବା ଫଳରେ ଜିଲ୍ଲାର ଉନ୍ନୟନମୂଳକ କାର୍ଯ୍ୟକ୍ରମ ବେଶ୍ ତ୍ୱରାନ୍ୱିତ ହୋଇପାରିବ ।

## (୪) ଜଗତସିଂହପୁର ଜିଲ୍ଲା :

କଟକ ଜିଲ୍ଲାକୁ ବିଭକ୍ତ କରାଯାଇ ଜଗତସିଂହପୁର ଉପଖଣ୍ଡକୁ ଜିଲ୍ଲାର ମାନ୍ୟତା ପ୍ରଦାନ କରାଯାଇଛି । ସମୁଦ୍ର ଉପକୂଳବର୍ତ୍ତୀ ଏହି ଜିଲ୍ଲାର କ୍ଷେତ୍ରଫଳ ୧,୬୫୯ ବର୍ଗ କିଲୋମିଟର । ୧୯୯୧ ମସିହା ଜନଗଣନା ଅନୁଯାୟୀ ଏହି ଜିଲ୍ଲାର ଲୋକସଂଖ୍ୟା ୯,୩୨,୪୮୪ ସେଥିରୁ ପୁରୁଷଙ୍କ ସଂଖ୍ୟା ୪,୬୧,୭୬୫ । ହରିଜନଙ୍କ ସଂଖ୍ୟା ୫୧,୬୧୯ । ଆଦିବାସୀଙ୍କ ସଂଖ୍ୟା ୪୮ । ମୋଟ ସାକ୍ଷର ସଂଖ୍ୟା ହେଉଛି ୫,୨୦,୪୬୧ । ଏହି ଜିଲ୍ଲାରେ ୪ଟି ତହସିଲ୍ ଓ ୭୬ଟି ଆର: ଆଇ: ସର୍କଲ କାର୍ଯ୍ୟ କରୁଛି । ଏହି ଜିଲ୍ଲାର ବ୍ଲକ୍ ସଂଖ୍ୟା ହେଉଛି ୮ ଓ ୧୩୦୫ଟି ରାଜସ୍ୱ ଗ୍ରାମ ରହିଛି । ଜଗତସିଂହପୁର ହେଉଛି ଏଜିଲ୍ଲାର ସଦରମହକୁମା । ଏଥିରେ ୧୮୧ ଗୋଟି ଗ୍ରାମ ପଞ୍ଚାୟତ ରହିଛି । ଶିଳ୍ପ କ୍ଷେତ୍ରରେ ଜିଲ୍ଲାଟି ବିଶେଷ ସମୃଦ୍ଧ ନ ହେଲେ ମଧ୍ୟ ପାରାଦ୍ୱୀପଠାରେ ପାରାଦ୍ୱୀପ ଫସ୍‌ଫେଟ୍ ଲିମିଟେଡ୍, ତିର୍ତ୍ତୋଲସ୍ଥିତ ସୀତଳ ସୂତାକଳ ଓ ନୂଆପଡ଼ା ସ୍ଥିତ ୨୫ ହଜାର ଲିଟର କ୍ଷମତା ସମ୍ପନ୍ନ ଦୁଗ୍ଧ ଶୀତଳୀକରଣ କେନ୍ଦ୍ର ରହିଛି ।

## (୫) ଯାଜପୁର ଜିଲ୍ଲା :

କଟକ ଜିଲ୍ଲାର ସର୍ବବୃହତ ଯାଜପୁର ଉପଖଣ୍ଡକୁ ବିଭକ୍ତ କରି ଯାଜପୁର ଜିଲ୍ଲାଗଠନ କରାଯାଇଛି । ଏହି ଜିଲ୍ଲାର ଭୌଗୋଳିକ ପରିସୀମା ହେଉଛି ୨,୮୮୫ ବର୍ଗ କିଲୋମିଟର ଓ ୧୯୯୧ ଜନଗଣନା ଅନୁଯାୟୀ ଏହାର ଜନସଂଖ୍ୟା ହେଉଛି ୧୩,୮୦,୨୦୩ । ପାଣିକୋଇଲିଠାରେ ଉକ୍ତ ଜିଲ୍ଲାର ସଦରମହକୁମା ରଖାଯାଇଛି । ଏହି ଜିଲ୍ଲାଟି ଯାଜପୁର ସବ୍‌ଡିଭିଜନକୁ ନେଇ ଗଠିତ । ଉକ୍ତ ଜିଲ୍ଲାରେ ଗୋଟିଏ ପୌରାଞ୍ଚଳ, ଗୋଟିଏ ବିଜ୍ଞାପିତ ଅଞ୍ଚଳ ଓ ୧୦ଟି ବ୍ଲକ ରହିଛି । ଜିଲ୍ଲାର ଭୌଗୋଳିକ ଅବସ୍ଥିତି ଯୋଗୁଁ ଓ ପ୍ରଶାସନିକ ଦୃ

ଅର୍ଥନୈତିକ ସୁଫଳ ଆଶାଜନକ ଭାବେ ମିଳି ପାରିନାହିଁ । ଏଣୁ ଯାଜପୁରକୁ ଜିଲ୍ଲାର ମାନ୍ୟତା ଦେବା ଲାଗି ବହୁ ଦିନରୁ ଦାବୀ ହୋଇ ଆସୁଥିଲା । ସୌଭାଗ୍ୟର କଥା ଯେ ଆମର ବରେଣ୍ୟ ମୁଖ୍ୟମନ୍ତ୍ରୀଙ୍କ ସୁଦୂରପ୍ରସାରୀ ଚିନ୍ତାଧାରା ଦ୍ୱାରା ହିଁ ଏହା ସଫଳ ହୋଇପାରିଛି । ଚିର ବନ୍ୟା ପ୍ରପୀଡ଼ିତ ଯାଜପୁର, ଯାଜପୁର ଜିଲ୍ଲାରେ ଜନସାଧାରଣଙ୍କ ମଧ୍ୟରେ ଏକ ଆଶାର ଝଲକ ସୃଷ୍ଟି ହୋଇଛି । ଯୋଜନା ପ୍ରକ୍ରିୟାରେ ନିଜକୁ ସାମିଲ କରିବା ଲାଗି ସେମାନଙ୍କ ମନ ମଧ୍ୟରେ ଏକ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇଛି ।

## (୬) କେନ୍ଦ୍ରାପଡ଼ା ଜିଲ୍ଲା :

ତୁଳସୀ କ୍ଷେତ୍ର ନାମରେ ଖ୍ୟାତ କେନ୍ଦ୍ରାପଡ଼ା ଜିଲ୍ଲା ବହୁ ଦିନରୁ କଟକ ଜିଲ୍ଲାର ଏକ ଅଂଶ ବିଶେଷ ହୋଇ ରହି ଆସୁଥିଲା । ଇତିହାସ ଓ ସଂସ୍କୃତି ସମୃଦ୍ଧ ଏହି ଜିଲ୍ଲା ବିଗତ କେତେକ ଦଶନ୍ଧି ଧରି ରାଜ୍ୟର ସାମାଜିକ ରାଜନୈତିକ ଓ ବୌଦ୍ଧିକ କ୍ଷେତ୍ରରେ ଏକ ପ୍ରଭାବକାରୀ ଅଧ୍ୟାୟ ସୃଷ୍ଟିକରି ଆସିଛି । ଯୁଗ ଯୁଗ ଧରି ପ୍ରାକୃତିକ ବିଭୀଷିକାର ଶିକାର ହୋଇ ଏହି ଜିଲ୍ଲାଟି ନିଜର ସ୍ୱତନ୍ତ୍ରତା ବଜାୟ ରଖିଛି । ଜନସଂଖ୍ୟା ଦୃଷ୍ଟିକୋଣରୁ ଏହି ଜିଲ୍ଲାଟି ଏକ ଜନବହୁଳ ଜିଲ୍ଲାବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଜିଲ୍ଲାର ଜନସଂଖ୍ୟା ୧୯୯୧ ମସିହା ଜନଗଣନା ଅନୁଯାୟୀ ୧୨ ଲକ୍ଷ ୧ ହଜାର ୬୮୭ ଅଟେ । ଏଥିରେ ୫ଟି ତହସିଲ୍, ଗୋଟିଏ ମ୍ୟୁନିସିପାଲଟି ଓ ଗୋଟିଏ ଏନ୍: ଏ: ସି: ରହିଛି । ଗ୍ରାମଗୁଡ଼ିକର ମୋଟ ସଂଖ୍ୟା ହେଲା ୧,୫୩୫ ଓ ଏହି ଜିଲ୍ଲା ଅଧୀନରେ ୯ଟି ବ୍ଲକ୍ କାର୍ଯ୍ୟକରୁଅଛି । ଜିଲ୍ଲାର ଭୌଗୋଳିକ ଅବସ୍ଥିତି ଯୋଗୁଁ ଜିଲ୍ଲାରେ ଆଶାଜନକ ପ୍ରଗତି ସମ୍ଭବ ହୋଇ ପାରୁନଥିଲା । ମାତ୍ର ଏହି ଉପଖଣ୍ଡକୁ ଜିଲ୍ଲାର ମାନ୍ୟତା ପ୍ରଦାନ କରାଯିବା ଫଳରେ ପ୍ରବର୍ତ୍ତିତ ଯୋଜନାଗୁଡ଼ିକର ସୁଫଳ ଆଶାଜନକ ଭାବେ ମିଳିପାରିବ ବୋଲି ଜନସାଧାରଣଙ୍କ ମଧ୍ୟରେ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇଛି । ଏହା ଫଳରେ ସମ୍ପୃକ୍ତ ଜିଲ୍ଲାର ଜନସାଧାରଣ ପ୍ରତ୍ୟକ୍ଷ ଭାବେ ଜିଲ୍ଲା ପ୍ରଶାସନର ସନ୍ନିକଟ ହୋଇ ପାରିବେ ଓ ଯୋଜନା ପ୍ରକ୍ରିୟାରେ ନିଜକୁ ସାମିଲ କରିବାର ସୌଭାଗ୍ୟ ଲାଭ କରିପାରିବେ । ଏହି ଜିଲ୍ଲାର ଭୌଗୋଳିକ ପରିସୀମା ହେଉଛି ୨,୫୫୬ ବର୍ଗ କିଲୋମିଟର । ଏହି ଜିଲ୍ଲାର ସଦର ମହକୁମା ହେଉଛି କେନ୍ଦ୍ରାପଡ଼ା । କେନ୍ଦ୍ରାପଡ଼ା ସବ୍‌ଡିଭିଜନକୁ ନେଇ ଜିଲ୍ଲାଟି ଗଠିତ ହୋଇଛି ।

## (୭) ଖୋର୍ଦ୍ଧା ଜିଲ୍ଲା :

ଐତିହାସିକ ଭାବଧାରା ତଥା ସ୍ୱଦେଶ ଭାବ ପ୍ରୀତିରେ ସୁବିମଣ୍ଡିତ ଖୋର୍ଦ୍ଧା ଉପଖଣ୍ଡଟି ବହୁ ଦିନରୁ ପୁରୀ ଜିଲ୍ଲା ସହ ସଂଶ୍ଳିଷ୍ଟ ହୋଇ ରହି ଆସୁଥିଲା । ୧୮୦୩ ମସିହାରୁ ୧୮୩୧ ମସିହା ପର୍ଯ୍ୟନ୍ତ ଖୋର୍ଦ୍ଧାର ଜନସାଧାରଣ ଫିରିଙ୍ଗି ଶାସନ ବିରୁଦ୍ଧରେ ଯେଉଁ ଅବିରତ ସ୍ୱର ଉଦ୍‌ଘୋଷଣ କରି ଓଡ଼ିଶାର ସ୍ୱାଧୀନତା ବଜାୟ ରଖି ପାରିଥିଲେ ସେଥିରୁ ସେମାନଙ୍କର ସ୍ୱଦେଶ ପ୍ରୀତିର ପରିଚୟ ମିଳେ । ବହୁଦିନ ବିତି ଯାଇଥିଲେ ମଧ୍ୟ ଖୋର୍ଦ୍ଧା ଉପଖଣ୍ଡକୁ ଆଜି ଯେଉଁ ଜିଲ୍ଲାର ମାନ୍ୟତା ପ୍ରଦାନ କରାଗଲା ତାହା ବାସ୍ତବରେ ପ୍ରଶଂସନୀୟ । ଖୋର୍ଦ୍ଧାର ଐତିହାସିକ ପୃଷ୍ଠଭୂମି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସାଂସ୍କୃତିକ ଦୃଷ୍ଟିକୋଣରୁ ଏହା ବେଶ୍ ଗରିମାମୟ । ଖୋର୍ଦ୍ଧାର ବରୁଣେଇ ମନ୍ଦିର, ବାଣପୁରର ଭଗବତୀ ମନ୍ଦିର, ଭୁଷଣ୍ଡପୁରର ଉଗ୍ରତାରା ମନ୍ଦିର, ଯାଟୀଲାର ଭୁଆସୁଣୀ ମନ୍ଦିର ସାଂସ୍କୃତିକ ଭାବଧାରାର ଏକ ନିଖୁଣ ଚିତ୍ର ପ୍ରଦାନ କରେ । ଏହି ଜିଲ୍ଲାର ଭୌଗୋଳିକ ପରିସୀମା ହେଉଛି ୨,୮୮୮ ବର୍ଗ କିଲୋମିଟର । ୧୯୯୧ ଜନଗଣନା ଅନୁଯାୟୀ ଏହାର ଜନସଂଖ୍ୟା ହେଉଛି ୭,୬୬,୭୮୪ । ଏହି ଜିଲ୍ଲାର ସଦରମହକୁମା ଭୁବନେଶ୍ୱରଠାରେ ଅବସ୍ଥାପିତ କରାଯାଇଛି । ଭୁବନେଶ୍ୱର ସବ୍‌ଡିଭିଜନକୁ ନେଇ ଏହି ଜିଲ୍ଲାଟି ଗଠିତ ହୋଇଛି ।

ଭୌଗୋଳିକ ଅବସ୍ଥିତି ଯୋଗୁଁ ଜିଲ୍ଲାରେ ପ୍ରବର୍ତ୍ତିତ ଯୋଜନାଗୁଡ଼ିକର ଆଶାଜନକ ସୁଫଳ ମିଳିପାରୁ ନଥିଲା । ମାତ୍ର ଜିଲ୍ଲାର ମାନ୍ୟତା ପ୍ରଦାନ କରାଯିବା ଫଳରେ ଜିଲ୍ଲାର ଜନସାଧାରଣ ଯୋଜନା ପ୍ରକ୍ରିୟାରେ ସାମିଲ ହେବା ସଙ୍ଗେ ସଙ୍ଗେ ଜିଲ୍ଲା ପ୍ରଶାସନର ସନ୍ନିକଟ ହୋଇପାରିବେ ।

## (୮) ନୟାଗଡ଼ ଜିଲ୍ଲା :

ନୟାଗଡ଼ ଭୂଖଣ୍ଡଟି ପୁରୀ ଜିଲ୍ଲା ସହ ବହୁଦିନରୁ ସଂଶ୍ଳିଷ୍ଟ ହୋଇ ରହି ଆସୁଥିଲା । ଭୌଗୋଳିକ ତଥା ପ୍ରଶାସନିକ ଦୃଷ୍ଟି କୋଣରୁ ଉକ୍ତ ଭୂଖଣ୍ଡକୁ ଜିଲ୍ଲାର ମାନ୍ୟତା ଦେବା ଲାଗି ଦାବୀ ହୋଇ ଆସୁଥିଲା । ଆମର ବରେଣ୍ୟ ମୁଖ୍ୟମନ୍ତ୍ରୀ ପରିସ୍ଥିତିର ସମୀକ୍ଷାକରି ନୟାଗଡ଼କୁ ଜିଲ୍ଲାର ମାନ୍ୟତା ଦେବା ଲାଗି ନୀତିଗତ ଭାବେ ସ୍ଥିର କଲେ । ତଦନୁଯାୟୀ ୧୯୯୩ ମସିହା ଏପ୍ରିଲ ୧ ତାରିଖ ଦିନ ଏହା ଏକ ନୂତନ ଜିଲ୍ଲାରୂପେ ଘୋଷଣା କରାଗଲା । ଜିଲ୍ଲାର ଜନସାଧାରଣଙ୍କ ବହୁ ଦିନର ଆଶା ଆକାଂକ୍ଷା ପୂରଣ ହେଲା । ଜିଲ୍ଲାର ଭୌଗୋଳିକ ପରିସୀମା ହେଉଛି ୩,୯୫୪ ବର୍ଗକିଲୋମିଟର । ୧୯୯୧ ମସିହା ଜନଗଣନା ଅନୁଯାୟୀ ଏହାର ଲୋକସଂଖ୍ୟା ୭,୬୬,୭୮୪ । ଏହି ଜିଲ୍ଲାର ସଦରମହକୁମା ନୟାଗଡ଼ଠାରେ ଅବସ୍ଥାପିତ କରାଯାଇଛି । ନୟାଗଡ଼ ସବ୍‌ଡିଭିଜନକୁ ନେଇ ଜିଲ୍ଲାଟି ଗଠିତ ହୋଇଛି । ଜିଲ୍ଲାର ସାଂସ୍କୃତିକ ତଥା ଐତିହାସିକ ଐତିହ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜିଲ୍ଲାର ସାକ୍ଷର ସଂଖ୍ୟା ଅନ୍ୟ ଜିଲ୍ଲାଗୁଡ଼ିକ ତୁଳନାରେ ବେଶ୍ ସନ୍ତୋଷଜନକ ବୋଲି ମନେହୁଏ । ଜିଲ୍ଲାର ଭୌଗୋଳିକ ଅବସ୍ଥିତି ଯୋଗୁଁ ଜିଲ୍ଲାରେ ଆଶାନୁରୂପ ପ୍ରଗତି ସଙ୍ଗଠିତ ହୋଇ ପାରୁନଥିଲା । ଏବେ ଜିଲ୍ଲାର ମାନ୍ୟତା ପ୍ରଦାନ କରାଯିବା ଫଳରେ ଜିଲ୍ଲାର ଜନସାଧାରଣ ପ୍ରତ୍ୟକ୍ଷ ଭାବେ ପ୍ରଶାସନର ସନ୍ନିକଟ ହେବା ସଙ୍ଗେ ସଙ୍ଗେ ଯୋଜନା ପ୍ରକ୍ରିୟାରେ ନିଜକୁ ସାମିଲ କରିପାରିବେ ।

## (୯) ନୂଆପଡ଼ା ଜିଲ୍ଲା :

କଳାହାଣ୍ଡି ଜିଲ୍ଲାକୁ ବିଭାଜିତ କରି ନୂଆପଡ଼ା ଜିଲ୍ଲା ସୃଷ୍ଟି କରାଯାଇଛି । ଏହି ଜିଲ୍ଲାର ଭୌଗୋଳିକ ପରିସୀମା ହେଉଛି ୩,୪୦୮ ବର୍ଗ କିଲୋମିଟର । ୧୯୯୧ ମସିହା ଜନଗଣନା ଅନୁଯାୟୀ ଏହାର ଜନସଂଖ୍ୟା ହେଉଛି ୪,୬୩,୩୨୫ । ଏହି ଜିଲ୍ଲାର ସଦର ମହକୁମା ନୂଆପଡ଼ାଠାରେ ଅବସ୍ଥାପିତ କରାଯାଇଛି । ନୂଆପଡ଼ା ହେଉଛି ଏହି ଜିଲ୍ଲାର ଏକମାତ୍ର ସବଡିଭିଜନ, ଯାହାକୁ ନେଇ ଜିଲ୍ଲାଟି ଗଠିତ ହୋଇଛି ।

ପରନ୍ତୁ ପ୍ରଶାସନିକ ଏହି ଜିଲ୍ଲାଟି ବିପୁଳ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ । ଜିଲ୍ଲାର ଭୌଗୋଳିକ ଅବସ୍ଥିତି ଯୋଗୁଁ ସମ୍ପୃକ୍ତ ଅଞ୍ଚଳରେ ଯୋଜନାର ସୁଫଳ ଆଶାନୁରୂପ ଭାବେ ମିଳୁପାରୁନଥିଲା । ସମ୍ପୃକ୍ତ ଭୂଖଣ୍ଡଟିକୁ ଜିଲ୍ଲାର ମାନ୍ୟତା ପ୍ରଦାନ କରାଯିବା ଫଳରେ ଜିଲ୍ଲାର ଜନସାଧାରଣ ଯୋଜନା ପ୍ରକ୍ରିୟାରେ ଭାଗ ନେବା ସଙ୍ଗେ ସଙ୍ଗେ ସେମାନଙ୍କ ପାଇଁ ରହି ଆସିଥିବା ପ୍ରଶାସନିକ ପ୍ରତିବନ୍ଧକମାନ ଦୂର ହୋଇପାରିବ ।

### (୧୦) ସୋନପୁର ଜିଲ୍ଲା :

ସୋନପୁର ଭୂଖଣ୍ଡଟିକୁ ବଲାଙ୍ଗୀର ଜିଲ୍ଲାରୁ ବିଭାଜିତ କରି ସୋନପୁର ଜିଲ୍ଲାରେ ପରିଣତ କରାଯାଇଛି । ଏହି ଜିଲ୍ଲାର ଭୌଗୋଳିକ ପରିସୀମା ହେଉଛି ୨,୨୮୪ ବର୍ଗ କିଲୋମିଟର । ୧୯୯୧ ମସିହା ଜନଗଣନା ଅନୁଯାୟୀ ଏହି ଜିଲ୍ଲାର ଲୋକସଂଖ୍ୟା ହେଉଛି ୪,୭୬,୮୧୦ । ଏହି ଜିଲ୍ଲାର ସଦର ମହକୁମା ସୋନପୁରଠାରେ ଅବସ୍ଥାପିତ କରାଯାଇଛି । ସୋନପୁର ଓ ବୀରମହାରାଜପୁର ୨ଟି ସବ୍‌ଡିଭିଜନକୁ ନେଇ ସୋନପୁର ଜିଲ୍ଲା ଗଠିତ ହୋଇଛି । ସୋନପୁର ଜିଲ୍ଲାଟି ଅତୀତରେ ଗଡ଼ଜାତ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ପ୍ରାକୃତିକ ସମ୍ପଦ ଭରା ଏହି ଜିଲ୍ଲାଟି ବିଭିନ୍ନ ବାଧାବିଘ୍ନ ଯୋଗୁଁ ଆଶାନୁରୂପ ପ୍ରଗତି ହାସଲ କରିପାରି ନାହିଁ । ଏହାର ଭୌଗୋଳିକ ଅବସ୍ଥିତି ଯୋଗୁଁ ପ୍ରଶାସନିକ କ୍ଷେତ୍ରରେ ବହୁ ବାଧାବିଘ୍ନ ଉପୁଜୁଥିବାର ଲକ୍ଷ୍ୟ କରାଯାଉଥିଲା । ଏହି ଜିଲ୍ଲାଟିର ଐତିହାସିକ ପୃଷ୍ଠଭୂମି ଓ ସାଂସ୍କୃତିକ ପରମ୍ପରା ବେଶ୍ ଗାରିମା ମଣ୍ଡିତ । ବିଳମ୍ବିତ ହେଲେ ମଧ୍ୟ ଜିଲ୍ଲାର ଜନସାଧାରଣଙ୍କର ବହୁ ଦିନର ଆଶା ଆଜି ସଫଳ ହୋଇଛି । ସୋନପୁରକୁ ଜିଲ୍ଲାର ମାନ୍ୟତା ମିଳିଛି । ଜିଲ୍ଲାର ଜନସାଧାରଣ ଏଥି ନିମନ୍ତେ ବେଶ୍ ଆନନ୍ଦିତ । ସୋନପୁରର ପୂର୍ବ ଐତିହ୍ୟ ଫେରାଇ ଆଣିବା ଲାଗି ସେମାନେ ଯୋଗଦାନ କରିବେ । ତେବେ ଯାହା ହେଉନା କାହିଁକି ଯୋଜନା ପ୍ରକ୍ରିୟାରେ ନିଜକୁ ସାମିଲ୍ କରିବାର ସୌଭାଗ୍ୟ ଲାଭ କରିପାରିଛନ୍ତି । ଏଥି ନିମନ୍ତେ ସେମାନେ ବେଶ୍ ଗୌରବାନ୍ୱିତ । ସୋନପୁର ଜିଲ୍ଲାକୁ ସ୍ୱୟଂସମ୍ପୂର୍ଣ୍ଣ ଜିଲ୍ଲାରେ ପରିଣତ କରିବା ନିମନ୍ତେ ସେମାନେ ଆଜି ପ୍ରତିଜ୍ଞାବଦ୍ଧ ।

ଜିଲ୍ଲା ପୁନର୍ଗଠନ କ୍ଷେତ୍ରରେ ବହୁ ବାଧାବିଘ୍ନ ସତ୍ତ୍ୱେ ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆଜି ଯେଉଁ ଐତିହାସିକ ପଦକ୍ଷେପ ନେଇଛନ୍ତି ତାହା ଓଡ଼ିଶା ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା ହୋଇ ରହିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଉପତଥ୍ୟ ଅଧିକାରୀ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଭୁବନେଶ୍ୱର ।




ଭୁବନେଶ୍ୱରଠାରେ ଆୟୋଜିତ ରେଡକ୍ରସ୍ ରକ୍ତ ଭଣ୍ଡାର ଭୂମି ପୂଜା ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ (୮/୫) ।

# ସ୍ୱାଧୀନତା ସଂଗ୍ରାମରେ ଆଦିବାସୀଙ୍କ ଭୂମିକା

❋ ପ୍ରାଧ୍ୟାପକ ଡ଼ଃ ହାଡ଼ିବନ୍ଧୁ ମିର୍ଦ୍ଧା

ଇତିହାସରେ ପୁନରାବୃତ୍ତି ହେଉଛି, ତା'ର ନିବୃତ୍ତି ନାହିଁ। ନିଜର ଭିଟା ମାଟି ତଥା ନ୍ୟାଯ୍ୟ ଅଧିକାର ପାଇଁ ମଣିଷ ଗରିବ ହେଉ ବା ଦୁର୍ବଳ ହେଉ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରେ। ସଂଗ୍ରାମ ସଂଘର୍ଷର ସମ୍ମୁଖୀନ ହୁଏ। ସେ ହାରେ କିମ୍ବା ଜିତେ। ସେ ତା'ର କ୍ଷେତ୍ର ବା ପରିବେଶକୁ ରକ୍ଷା କଲେ ମର୍ତ୍ତ୍ୟ ଭୋଗ କରେ ଏବଂ ଜୀବନ ଦାନ ଦେଲେ ସ୍ୱର୍ଗ ଭୋଗ କରେ। ଏ ତା'ର ବିଶ୍ୱାସ। ଏଣୁ ଆଦିବାସୀ ତା'ର ଅଧିକାର ବଜାୟ ରଖିବା ପାଇଁ ଯୁଗ ଯୁଗ ଧରି ସଂଗ୍ରାମ କରିଛି। ସେ ନିଜର ତଥା ନିଜ ପ୍ରଭୁର ସ୍ୱାର୍ଥ ରକ୍ଷା ପାଇଁ ତ୍ୟାଗ ସ୍ୱୀକାର କରିବାକୁ ପଛାଇ ନାହିଁ। ଏ ହେଉଛି ଆଦିବାସୀର ସ୍ୱାଧୀନ ଜୀବନର ଅନ୍ତଃସ୍ୱର। ଦୁର୍ଯ୍ୟୋଧନ ତଥା କୌରବ ଶତ ଭାଇଙ୍କୁ ଧରାଶାୟୀ କରିବା ଯେପରି ଏକ ସ୍ୱ ଅଭିମାନର ଜ୍ୱଳନ୍ତ ଆଦର୍ଶ, ସେପରି ଭୀମାର ତ୍ୟାଗ, ସେବା, ନିଷ୍ଠା ଓ ରାଜ ଭକ୍ତି (ଭୀମା ଭୂୟାଁ ଉପନ୍ୟାସ) ସେପରି ମହନୀୟ। ମଣିଷର ସ୍ୱାଧୀନତା ଓ ସ୍ୱାଭିମାନ ଜନ୍ମଗତ। ଏହି ମୂଲ୍ୟବୋଧକୁ ଆଦିବାସୀ ଜନଜାତି ଅଶିକ୍ଷିତ ତଥା ଅବହେଳିତ ରହିଥିଲେ ମଧ୍ୟ ଯଥାର୍ଥରେ ହୃଦୟଙ୍ଗମ କରିଛି।

ଏଣୁ ପ୍ରାକ୍ ସ୍ୱାଧୀନତାର ବହୁ ପୂର୍ବରୁ ଗୋରା ସରକାର ବାହୁ ବିସ୍ତାର କରି ଆଦିବାସୀଙ୍କ ଧନ, ଜୀବନ, ସମ୍ପତ୍ତିକୁ କବଳିତ କରିବାର ଉଦ୍ୟମ କଲେ। ଏଣୁ ଆଦିବାସୀମାନେ ପ୍ରଥମେ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କଲେ। ପରାଧୀନତାରୁ ମୁକ୍ତି ହୋଇ ଧନ, ଜୀବନ ଜଙ୍ଗଲ ସମ୍ପଦ ରକ୍ଷା କରିବାକୁ ତାଙ୍କର ଚିର ପରିଚିତ ଧନୁଶର ଧାରଣ କଲେ। ସେମାନେ ସରକାରଙ୍କୁ ସତର୍କ କରାଇଦେଲେ ଯେ ସରକାର ସେମାନଙ୍କର ଆଦର୍ଶ, ଜମି–ଜୀବନ ଉପରେ ହସ୍ତକ୍ଷେପ ନକରନ୍ତୁ, ମାତ୍ର ବଣିକ ଶାସନର ସରକାର ଶୋଷଣକୁ ହିଁ ତା'ର ଧର୍ମ ବୋଲି ବିଚାର କଲା। ଅତ୍ୟାଚାର ଚଳାଇଲା। ପାହାଡ଼ୀ ମଣିଷ – ଯୁଗ ଯୁଗର ମାଟିର ସନ୍ତାନ ଜଳି ଉଠିଲା – ଜାଳି ଦେବାକୁ ବିଦେଶୀ–ଦେଶୀ ଶୋଷକଙ୍କୁ।

ବାସ୍ତବରେ ଆଦିବାସୀମାନେ ଏ ମାଟିର ଆଦିମ ସନ୍ତାନ। ପ୍ରକୃତି ପ୍ରିୟ। ସେ ପଶୁ ପକ୍ଷୀ ପରି ଉନ୍ମୁକ୍ତ ଜୀବନ ଯାପନ କରିବାକୁ ଚାହେଁ। କୌଣସି ପ୍ରକାର ଅତ୍ୟାଚାର, ଅଯଥା ହସ୍ତକ୍ଷେପକୁ କେବେ ସହ୍ୟ କରିପାରେ ନାହିଁ ଏବଂ ତା'ର ଅଧିକାର ଜାହିର କରିବାକୁ ପଛାଏ ନାହିଁ। ସେ ବଡ଼ ସ୍ୱାଧୀନ ପ୍ରିୟ। ଏଣୁ ସାନ୍ତାଳ ଭାଷାରେ ସେ ଆହ୍ୱାନ ଦେଇ ଗାଇ ଉଠେ, "ବରେଦେ ବେରେ ବିଷେ, ଏ–ହୋ ଆଦିବାସୀ; ମାସେ ବେବରତ ମେ ଲଗନ୍ ଲଗନ୍। ଆଦିମ ଜାତି ମେସତେ ଆଦିବାସୀ ଆମସ୍ତେ ବେ ଜାହୋଃ ଆମତ ଲାତାର ଜଜ ହଲଖନ"। ଅର୍ଥାତ୍ ଏହି ଆଦିବାସୀ ବନ୍ଧୁ ଯୁଗରୁ ଏହି ମାଟିରେ ତମେ ରହି ଆସିଛ। ଏଣୁ ତୁମେ ବସବାସ କରିଛ। କେବେ ତୁମେ ଆଦି ମାନବତାର ବିଶେଷତ୍ୱ ରକ୍ଷା କରି ତୁମେ ଜାଗ୍ରତ ହୁଅ। ସେପରି କନ୍ଧ ମଧ୍ୟ ଗାଇ ଉଠେ :

"ଏ ଟେଟେ ଆଢ଼େ ଡାନି
ଭୀମ୍ ଟାଙ୍ଗ୍ କାନ୍ଧୁଛେ
ଗୁରାମାନେର୍ ଲଲ ବୁଧୁ ଫିଫି ବଲଛେ।
ଆନ୍‌ସେ ଫିକାଲ୍ ସେ ଫି ଦିନେ ଜାଇଦିନେ ଫି
ନାଙ୍କର ନିନାସ୍ ଫିଁକୁତ କଲେ କେସ୍ତା କେଦେବୀ,
ଆମର ବଛା ଆମର ପୁଲ ଆମର ମାଟର୍ ଗାଡା
ଆମର୍ ଜମିନ୍ ନେଲେ ଯେ କାମିଲଛେ ସାଡା।"
ଇତ୍ୟାଦି।

ଅର୍ଥାତ୍ "ହେ ଡାନି ଭୀମ ଦେବତାର କୁଠାର ଅସନ୍ତୋଷରେ କାନ୍ଦି ଉଠୁଛି। ଗୋରା ମଣିଷର ରକ୍ତ ଚାହେଁ। ଦିନେ ନା ଦିନେ ଏଇ ଅତ୍ୟାଚାରୀର ରକ୍ତ ପାନ କରିବେ। କାରଣ ମୋର ମୁକ୍ତ ପବନ ନିଶ୍ୱାସ ପ୍ରଶ୍ୱାସକୁ ଅର୍ଥାତ୍ ମୋର ସ୍ୱାଧୀନତାକୁ ବନ୍ଦ କଲେ ମୁଁ ବଞ୍ଚିପାରିବି ? ଆମେ ଏ ମାଟିର ଆଦିମ ସନ୍ତାନ। ଏ ବଣ ଜଙ୍ଗଲ ଆମର। ଆମର ଏହି ସୁରକ୍ଷା ପାଇଁ ବିଦ୍ରୋହ କରିବାକୁ ହେବ। ଆମର ଜମି କିଏ ନେଲା ଜଣାପଡୁ ନାହିଁ ?"

ଏହି ସ୍ୱାଧୀନ ଚେତନା କନ୍ଧ, ଶବର, ଭୂୟାଁ, ଜୁଆଙ୍ଗ, ଗଣ୍ଡ, କୋଲ୍ହ, ମିର୍ଦ୍ଧା, ଓରାମ୍ ସମ୍ପ୍ରଦାୟରେ ଗଡ଼ଜାତ ଅଞ୍ଚଳଗୁଡ଼ିକରେ ମଧ୍ୟ ବିଦ୍ରୋହ ସ୍ୱମାରମ୍ଭ ଦେଖାଦେଇଛି। ଯେପରି ୧୮୧୭ରେ ବକ୍ସି ଜଗବନ୍ଧୁଙ୍କ ବ୍ରିଟିଶ୍ ବିରୋଧ ଆନ୍ଦୋଳନରେ ଘୁମୁସରର ୪୦୦ କନ୍ଧ ସୈନିକ ଓ ବାଣପୁରର ଶବରମାନେ ଯୋଗ ଦେଇଥିଲେ। ଏହା ବ୍ୟତୀତ ନୟାଗଡ଼, ବାଣପୁର, ଦଶପଲ୍ଲା, ବଉଦ ଆଦିର ଆଦିବାସୀମାନେ ୧୮୦୫ ଯାଏ ସଂଗ୍ରାମ କରିଥିଲେ। ଯେତେବେଳେ ଭାରତର ସଭ୍ୟ ଶିକ୍ଷିତ ମଣିଷ ବ୍ରିଟିଶ୍ ରାଜ୍‌ର ନାଲି

ଆଖ୍ରୁ ତଳେ ମେଷ ଶାବକ ପରି ସୁପ୍ତ ରହିଥିଲେ, ସେତେବେଳେ ଓଡ଼ିଶା ତଥା ବିହାରର ଆଦିବାସୀମାନେ ସିଂହ ଶାବକ ପରି ଗର୍ଜନ କରିଥିଲେ । ଏପରିକି ଦୋରା ବିଶୋଇ ଓ ବୀରବର ପାତ୍ର ଘୁମୁସର ରାଜାଙ୍କ ମୃତ୍ୟୁ ପରେ ମଧ୍ୟ ୧୮୩୬ ଯାଏ ସଂଗ୍ରାମ ଚଳାଇଥିଲେ । ଦୋରା ବିଶୋଇଙ୍କ ପରେ ଚକ୍ର ବିଶୋଇ ନେତୃତ୍ୱ ନେଇଥିଲେ । ଚକ୍ର ବିଶୋଇ ଥିଲେ କନ୍ଧମାନଙ୍କର ନେତା । ସେ ଅନୁକୂଳ ରାଜାଙ୍କ ସମର୍ଥନ ସହିତ ପାରଲାଖେମୁଣ୍ଡିର ଶବର, ବଉଦ, କଳାହାଣ୍ଡି, ପାଟଣାଗଡ଼ର କନ୍ଧମାନେ ମଧ୍ୟ ଦୃଢ଼ ସମର୍ଥନ କଲେ । ତାଙ୍କ ବ୍ୟତୀତ ବଉଦର କର୍ଣ୍ଣର (କନ୍ଧ) ପରିବାର ଆଦିବାସୀ ନେତା ଓ ପାରଳାଖେମୁଣ୍ଡିର ଶବର ଗଣ୍ଡ ସେନା ସହଯୋଗ ଦେଇ ବ୍ରିଟିଶ୍ ଶାସକଙ୍କୁ ଆତଙ୍କିତ କଲେ । ଏପରି ଭାବରେ କନ୍ଧ, ଶବରମାନଙ୍କର ସଂଗ୍ରାମ ୧୮୩୬ରୁ ୧୮୬୬ ଯାଏ ଭୟଙ୍କର ରୂପ ନେଇଥିଲା । ଏହା ମଧ୍ୟରେ ଗାଦୀ ନେଇ ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ୧୮୨୭ରୁ ୧୮୬୪ ଯାଏ ସମ୍ବଲପୁର ଅଞ୍ଚଳର ଗଣ୍ଡ, ବିଞ୍ଝାଲ, ଭୂୟାଁ ଆଦି ଜମିଦାରଙ୍କ ସମର୍ଥନ ଓ ଫିରିଙ୍ଗି ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ମୁଣ୍ଡ ଟେକିଲା । ଆଦିବାସୀଙ୍କ ସମର୍ଥନ ସୁରେନ୍ଦ୍ର ସାଏଙ୍କୁ ଅପୂର୍ବ ବଳ ଯୋଗାଇ ଦେଇଥିଲା । ଆଦିବାସୀ ଜମିଦାର ହାଟୀ ସିଂ, କୁଞ୍ଜଲ ସିଂ, ଅମର ସିଂଙ୍କ ସହଯୋଗ ଓ ନେତୃତ୍ୱ ଯୋଗୁଁ ବ୍ରିଟିଶ୍ ସରକାର ତଥା ଇଂଲଣ୍ଡର ସିଂହାସନ ଦୋହଲି ପଡ଼ିଲା । ସତେ ଯେପରି ଏହି ସ୍ଫୁଲିଙ୍ଗ ରାଞ୍ଚିର ୨୫ ବର୍ଷର ଯୁବକ ବିର୍ସା ମୁଣ୍ଡାଙ୍କୁ ବିଦ୍ରୋହୀ କରିବାରେ ୧୯୦୦ରେ ପ୍ରେରଣା ଯୋଗାଇଥିଲା । ଛୋଟନାଗପୁର ତଥା ବିହାର ଅଞ୍ଚଳର ଭୂମି, ଜଙ୍ଗଲ ରକ୍ଷା କରିବା ସଙ୍ଗେ ସଙ୍ଗେ ଆଦିବାସୀମାନଙ୍କର ସ୍ୱାଧୀନତା ଅକ୍ଷୁଣ୍ଣ ରଖିବା ପାଇଁ ନିଜର ଜୀବନକୁ ବଳି ଦେବାକୁ ମଧ୍ୟ ସ୍ୱର୍ଗତଃ ବିର୍ସା ପଛେଇ ନାହାନ୍ତି । ଯେପରି ୧୯୧୪ରେ ଦଶପଲ୍ଲା କନ୍ଧ ମେଳି, କେନ୍ଦୁଝରର ସରଦାର ରତନ ନାଏକ ପରେ ୧୮୯୧ରେ ଶିକ୍ଷିତ ଯୁବ ନେତା ଧରଣୀଧର ଭୂୟାଁଙ୍କ ନେତୃତ୍ୱ ଏବଂ ଦେଶପ୍ରେମ ଜାତି ପକ୍ଷେ ଏକାନ୍ତ ସ୍ମରଣୀୟ । ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ପରି ଅତ୍ୟାଚାରୀ ଶାସକ ହାତରୁ ଶାସନ ଗାଦୀ ଓ ସିଂହାସନ ଛଡ଼ାଇ ନେବାକୁ ଧରଣୀଧର ପଛେଇ ନଥିଲେ ଏବଂ ଜୁଆଙ୍ଗ, ଭୂୟାଁ ନିପୀଡ଼ିତ ପ୍ରଜାମାନଙ୍କୁ ଅତ୍ୟାଚାରରୁ ମୁକ୍ତ କରିବା ପାଇଁ ପ୍ରୟାସ କରିଥିଲେ, ତାହା ଫଳବତୀ ଅବଶ୍ୟ ହେଲା ନାହିଁ, ତେବେ ତାଙ୍କର ତ୍ୟାଗ ସ୍ମରଣୀୟ । କାରଣ ଫକୀର ମୋହନ ସେନାପତିଙ୍କ କୌଶଳରେ ଧରାପଡ଼ି ଅସହାୟ ହୋଇ ପଡ଼ିଲେ ସେ ଏବଂ ୬ ବର୍ଷ କାରାବରଣ କରିବା ପରେ ପୁଣି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ବାସ୍ତବରେ ତାଙ୍କର ଦେଶ ଓ ଜାତି ପ୍ରୀତି ଅନନ୍ୟ । ସେପରି କୋରାପୁଟର ଆଦିବାସୀ ନେତା ଲକ୍ଷ୍ମଣ ନାୟକ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ଦେଶକୁ ସ୍ୱାଧୀନ କରିବାରେ ନେତୃତ୍ୱ ନେଇଥିଲେ । ସେ ୧୯୨୧ରୁ ୧୯୪୨ ଯାଏ କୋରାପୁଟର ଘଞ୍ଚ ଅରଣ୍ୟ ତଥା ବଣ ପାହାଡ଼ରେ ରହୁଥିବା ଆଦିବାସୀମାନଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ପାଇଁ ସଙ୍ଗଠିତ କରିଥିଲେ । ତାଙ୍କ ସହିତ କୋରାପୁଟର ପରଜା, ଗଦବ, ଜୁଆଙ୍ଗ ସମସ୍ତେ ନିଜର ମାଟି ଓ ଜାତିକୁ ମୁକ୍ତ କରିବା ପାଇଁ ଆନ୍ଦୋଳନକୁ ପ୍ରବଳତର କଲେ । ଆଜି ଲକ୍ଷ୍ମଣ ନାୟକଙ୍କ ଦେଶ ପ୍ରେମର ପରାକାଷ୍ଠା ଓ ବୈପ୍ଳବିକ ଇତିହାସ ଆମର ସ୍ମରଣୀୟ । ଦେଶ ପାଇଁ ହସିହସି ବୀର ସୁରେନ୍ଦ୍ର ସାଏ, ହାଟୀ ସିଂ, ରତନ ନାଏକ, ବିର୍ସା ମୁଣ୍ଡା, ଲକ୍ଷ୍ମଣ ନାୟକ, ଧରଣୀଧର ଆଦିଙ୍କର ସାମ୍ନାରେ ବିପ୍ଳବର ମୁଖ୍ୟ ନାୟକ ସୁନ୍ଦରଗଡ଼ ଜିଲ୍ଲାର 'ନିର୍ମଳ ମୁଣ୍ଡା' ଧରଣୀଧର ଭୂୟାଁ ଦେଶ ତଥା ଜାତିର ଶାନ୍ତି, ମୁକ୍ତି, ସ୍ୱାଧୀନତା ପାଇଁ ବ୍ୟକ୍ତିଗତ ଜୀବନର ସୁଖ, ଶାନ୍ତି ଭୁଲି ଆତ୍ମ ତ୍ୟାଗ କରିଛନ୍ତି ।

ବାସ୍ତବରେ ଆଦିବାସୀମାନେ ହିଁ ପ୍ରଥମେ ଅତ୍ୟାଚାରୀ ଶୋଷକ ଗୋରା ଶାସନ ବିରୁଦ୍ଧରେ ଜନ ଜାଗରଣ ଆଣି ମାନବିକ ଅଧିକାର ପାଇଁ ସଂଗ୍ରାମ କରିଥିଲେ । ଏଣୁ ବିଶ୍ୱ କବି ରବୀନ୍ଦ୍ରନାଥ ଠାକୁର ଆଦିବାସୀମାନଙ୍କର ଜାତୀୟ ସଂଗ୍ରାମ ତଥା ବ୍ରିଟିଶ୍ ଶାସନର ମୂଳ ଉତ୍ପାଟକଙ୍କୁ ପ୍ରଶଂସା କରିଛନ୍ତି । ଏ ମାଟିର ପ୍ରଥମ ଅଧିବାସୀ ଆଦିବାସୀମାନେ ବିଦେଶାଗତ 'ଦିକୁ'ମାନଙ୍କର ଶାସନ ଓ ଶୋଷଣକୁ ପ୍ରତିବାଦ, ପ୍ରତିରୋଧ କରିବାରେ ସକ୍ଷମ ହୋଇଥିଲେ ଏବଂ ଦେଶ, ଜାତି ପାଇଁ ଆସବଳୀ ଦେଲେ । ଫଳରେ ୧୯୨୦ ପରେ ମହାତ୍ମା ଗାନ୍ଧୀଙ୍କ ସ୍ୱାଧୀନତା ଆନ୍ଦୋଳନ ଆହୁରି ଜୋର ଉଠିଲା । ସମଗ୍ର ଭାରତବାସୀ ବ୍ରିଟିଶ୍ ବିରୋଧୀ ଆନ୍ଦୋଳନରେ ଯୋଗ ଦେବାରୁ ୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ଏଣୁ ଭାରତ ଆନ୍ଦୋଳନରେ ଭାରତର ପ୍ରଥମ ବ୍ରିଟିଶ୍ ବିରୋଧୀ ଆନ୍ଦୋଳନର ମୁଖ୍ୟ ବିଦ୍ରୋହୀ ଥିଲେ ଆଦିବାସୀମାନେ । ଏଣୁ ସ୍ୱାଧୀନତାର ସ୍ୱାଦ ଚାଖିବାରେ ଆଦିବାସୀମାନେ ସୁଯୋଗ ପାଆନ୍ତୁ । କାରଣ ସେମାନେ ଯେପରି ସରଳ ପ୍ରକୃତି ପରି ମୁକ୍ତ, ସେପରି ନିର୍ଭୀକ ଓ ବୀର । ସେମାନେ ମାଁ ଓ ମାଟିର ମୁକ୍ତି ପାଇଁ ସଂଗ୍ରାମ କରିବାରେ ପଛଘୁଞ୍ଚା ଦେଉନାହାନ୍ତି । ଆଜି ମଧ୍ୟ ସେମାନଙ୍କ ଦାୟାଦମାନଙ୍କ ମନରେ ଜାତୀୟ ତଥା ଦେଶ ପ୍ରୀତି ଓ ସ୍ୱାଭିମାନ ସ୍ୱାଧୀନ ଚେତନା ସାଗର ପରି କଲ୍ଲୋଳିତ । କାରଣ ଦେଶ ସ୍ୱାଧୀନ ହେଲା ସତ — ମାତ୍ର ମାନବିକ ଅଧିକାର ଏଯାଏ ସମ୍ପୂର୍ଣ୍ଣ ଅଧିକାରୀ ହୋଇପାରି ନାହିଁ । ସ୍ୱାଧୀନ ଦେଶର ଟାଉଟରମାନେ ନିରୀହ ଆଦିବାସୀଙ୍କୁ ଶୋଷଣ କରିବାରେ ତଥା ଭୟଭୀତ କରିବାରେ ପଛାଉ ନାହାନ୍ତି । ସେମାନଙ୍କର ସର୍ବବିଧ ଉନ୍ନତି ପାଇଁ ଉଦାରତା ପ୍ରକାଶ ପାଇଲେ, ସ୍ୱର୍ଗତଃ ଶହୀଦ, ବୀର ଆଦିବାସୀମାନଙ୍କର ଆତ୍ମା ତୃପ୍ତ ହେବ ଏବଂ ଗ୍ରାମ୍ୟ ନଗର ମଣିଷ ମଧ୍ୟରେ ଭାବ ବିନିମୟ ହୋଇ ସୁସ୍ଥ ସମାଜ ଗଢ଼ି ଉଠିବ, ଏହା ହିଁ ଆମର ଭରସା ।

---

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ,
ସୁନ୍ଦରଗଡ଼ ସରକାରୀ ମହାବିଦ୍ୟାଳୟ,
ଜିଲ୍ଲା—ସୁନ୍ଦରଗଡ଼ ।

# ଖୋରଧା ପାଇକ ବିଦ୍ରୋହ

✱ ଶ୍ରୀ ବ୍ରଜ ପାଇକରାୟ

ଇଂରେଜ କମିଶନର ମିଃ ଇଓୟର (Ewer) ସାହେବ ଖୋରଧା ପାଇକମାନଙ୍କ ସମ୍ବନ୍ଧରେ ତାଙ୍କ ୧୮୧୮ ମସିହା ରିପୋର୍ଟରେ ଲେଖିଛନ୍ତି, "ଖୋରଧାର ଆଉ ପାଇକମାନଙ୍କ ସାହାଯ୍ୟ ଦରକାର ହେଉନାହିଁ । ସୈନ୍ୟ ବିଭାଗରେ ସେମାନଙ୍କୁ ରଖିବା ବିପଦଜନକ, ଅତଏବ ତାଙ୍କୁ ସାଧାରଣ ରୟତଙ୍କ ଶ୍ରେଣୀକୁ ପେଲି ଦେଇ ତାଙ୍କଠାରୁ ଖଜଣା ଅସୁଲ କରିବା ଦରକାର । ପାଇକମାନଙ୍କୁ ପୂର୍ବର ଜାଗିର ଜମି ଦିଆଯିବା ଉଚିତ ନୁହେଁ । ଏହା ଅଳ୍ପ ସମୟ ମଧ୍ୟରେ ପାଇକ ନାମ ଲୋପ ହୋଇ ଆସିଲାଣି । କିନ୍ତୁ ଏବେ ମଧ୍ୟ ଯେଉଁଠାରେ ପାଇକ ଅଛନ୍ତି; ପୂର୍ବର ଦୁର୍ଦ୍ଧର୍ଷ ସ୍ୱଭାବ ଛାଡ଼ି ନାହାନ୍ତି । ସେମାନଙ୍କ ବିଷଦାନ୍ତ ଭାଙ୍ଗିବା ପାଇଁ ପୋଲିସ କର୍ମଚାରୀଙ୍କୁ ଅନେକ କାଳ ସେମାନଙ୍କୁ ଜବତରେ ରଖିବାକୁ ପଡ଼ିବ । ପାଇକ କୁଳକୁ ସମୂଳେ ଧ୍ୱଂସ ନ କଲେ ମଙ୍ଗଳ ନାହିଁ ।"

ବିଶିଷ୍ଟ ଇଂରେଜ ଐତିହାସିକ G. Tonbee ଖୋରଧା ପାଇକ ବିଦ୍ରୋହର ପ୍ରଚଣ୍ଡତା ସମ୍ବନ୍ଧରେ ଉଲ୍ଲେଖ କରି ଲେଖିଛନ୍ତି, "The rising was a veritable storm that burst with such relentless fury as to threaten the explusion of the British, if not from the whole of Orissa, at least from the territory of Khurda

ବ୍ରିଟିଶ୍ ସରକାର ପାଇକ ବାହିନୀଙ୍କୁ କିଭଳି ଭୟ କରୁଥିଲେ ଏବଂ ପାଇକ ବିଦ୍ରୋହ ଫଳରେ ଓଡ଼ିଶାରେ ବ୍ରିଟଶ୍ ସାମ୍ରାଜ୍ୟର ମୂଳଦୁଆ କିପରି ଦୋହଲି ଯାଇଥିଲା ତାହା ଉପରୋକ୍ତ ଉଦ୍ଧୃତାଂଶରୁ ସ୍ପଷ୍ଟରୂପେ ପ୍ରତୀୟମାନ ହୁଏ ।

ବ୍ରିଟିଶ୍‌ମାନଙ୍କ ଦୃଷ୍ଟିରେ ଯାହା ପାଇକମାନଙ୍କ ବିଦ୍ରୋହ ଭାବରେ ଇତିହାସରେ ଲିପିବଦ୍ଧ ହୋଇଛି ପ୍ରକୃତ ପକ୍ଷରେ ତାହା ଓଡ଼ିଆ ଜାତିର ସ୍ୱାଭିମାନ ଏବଂ ଆତ୍ମମର୍ଯ୍ୟାଦା ବୋଧର ପରିପ୍ରକାଶ । ୧୮୫୭ ମସିହା ସିପାହୀ ବିଦ୍ରୋହର ବହୁ ପୂର୍ବରୁ ଅର୍ଥାତ୍ ୧୮୧୭ ମସିହାରେ ସଙ୍ଗଠିତ ଉକ୍ତ ବିଦ୍ରୋହକୁ ସମଗ୍ର ଭାରତବର୍ଷର ପ୍ରଥମ ଗଣବିପ୍ଳବ ଓ ସ୍ୱାଧୀନଚେତା ପାଇକମାନଙ୍କର ବୀରତ୍ୱର ଅଲିଭା କାହାଣୀ ବୋଲି କହିବା ଅଧିକ ଠିକ୍ ହେବ ।

## ପାଇକ ବିଦ୍ରୋହର ପୃଷ୍ଠଭୂମି :

ଇଂରେଜମାନେ ଓଡ଼ିଶା ଶାସନ କରିବା ପୂର୍ବରୁ ଉତ୍ତରରେ ସମଗ୍ର ବଙ୍ଗଦେଶ ଏବଂ ଦକ୍ଷିଣରେ "ଦକ୍ଷିଣ ସରକାର"ର ଓଡ଼ିଆ ଜିଲ୍ଲା ଗଞ୍ଜାମ ମଧ୍ୟ ସେମାନଙ୍କର ଅଧୀନସ୍ଥ ହୋଇ ସାରିଥିଲା । ତେଣୁ ଇଂରେଜମାନେ ଓଡ଼ିଶାକୁ ତିନି ଦିଗରୁ ଆକ୍ରମଣ କରିବା ସହଜ ହୋଇଥିଲା । ମାନ୍ଦ୍ରାଜରୁ ଇଂରେଜ ବାହିନୀ ୧୮୦୩ ମସିହା ସେପ୍ଟେମ୍ବର ୮ ତାରିଖରେ ବାହାରି ମାଣିକ ପାଟଣା ବାଟ ଦେଇ ୧୬ ତାରିଖରେ ପୁରୀରେ ପହଞ୍ଚିଲେ ।

ମରହଟ୍ଟାଙ୍କ ତରଫରୁ ସେ ଅଞ୍ଚଳରେ ନିଯୁକ୍ତି ହୋଇଥିବା ଫତୁଆଲି ମାଲୁଦର ଫତେ ମହମ୍ମଦଙ୍କ ସାହାଯ୍ୟକ୍ରମେ କର୍ଣ୍ଣେଲ ହାରକୋର୍ଟ୍ ଚିଲିକା ମୁହାଣ ପାରିହୋଇ ଦୁଇଦିନ ପରେ ନରସିଂହପାଟଣାରେ ପହଞ୍ଚିଲେ । ସେଠାରେ ଏବଂ ପୁରୀ ଅଧିକାରବେଳେ ଇଂରେଜମାନେ କୌଣସି ପ୍ରକାର ପ୍ରତିରୋଧର ସମ୍ମୁଖୀନ ହୋଇ ନ ଥିଲେ । ପୁରୀର ଜଗନ୍ନାଥ ମନ୍ଦିରକୁ ଦଖଲ କରି କେତେକ ହିନ୍ଦୁ ସିପାହୀଙ୍କ ଦାୟିତ୍ୱରେ ଛାଡ଼ି ଦେଇ କର୍ଣ୍ଣେଲ ହାରକୋର୍ଟ୍ କଟକ ଯାତ୍ରା କରିଥିଲେ । ଅଠରନଳା ପାଖରେ ମରହଟ୍ଟାମାନଙ୍କ ସାମାନ୍ୟ ପ୍ରତିରୋଧ ଏବଂ ଜଗନ୍ନାଥ ସଡ଼କରେ ସେମାନଙ୍କର ଆକ୍ରମଣକୁ ପ୍ରତିହତ କରି ଇଂରେଜ ସୈନ୍ୟମାନେ କଟକ ଆଡ଼କୁ ଅଗ୍ରସର ହେଲେ । ଇଂରେଜମାନଙ୍କଠାରୁ ପରାଜିତ ହୋଇ ମରହଟ୍ଟାମାନେ ଖୋରଧା ଜଙ୍ଗଲ ଅଞ୍ଚଳକୁ ପଳାଇଗଲେ । କର୍ଣ୍ଣେଲ ହାରକୋର୍ଟ୍ ବାରଙ୍ଗଗଡ଼ ଦେଇ କାଠଯୋଡ଼ି ପାରି ହୋଇ କଟକରେ ପହଞ୍ଚିଲେ ।

ବଙ୍ଗଳାରୁ କ୍ୟାପ୍ଟେନ୍ ମୋରଗାନ୍‌ଙ୍କ ନେତୃତ୍ୱରେ ଦଳେ ଇଂରେଜ ସୈନ୍ୟ ବାଲେଶ୍ୱର ସମୁଦ୍ର ଉପକୂଳବର୍ତ୍ତୀ ଯାମପଡ଼ାଠାରେ ଜାହାଜରୁ ଓହ୍ଲାଇ ମରହଟ୍ଟାମାନଙ୍କର ଦୁର୍ଗ ଅଧିକାର କରି ବାଲେଶ୍ୱର ଦଖଲ କଲେ । ଅନ୍ୟ ଦଳେ ଇଂରେଜ ସୈନ୍ୟ କର୍ଣ୍ଣେଲ ଫର୍ଗୁସନଙ୍କ ନେତୃତ୍ୱରେ ମେଦିନୀପୁର ବାଟେ ଆସି ବାଲେଶ୍ୱରରେ ଥିବା ଇଂରେଜମାନଙ୍କ ସହ ମିଶିଲେ । ଉକ୍ତ ମିଳିତ ବାହିନୀ ବାଲେଶ୍ୱରରୁ ବାହାରି କଟକରେ କର୍ଣ୍ଣେଲ ହାରକୋର୍ଟ୍‌ଙ୍କ ସୈନ୍ୟମାନଙ୍କ ସହ ମିଶି ବାରବାଟୀ ଦୁର୍ଗ ଦଖଲ କଲେ ।

ଏହିଭଳି ଭାବରେ ୧୮୦୩ ମସିହାରେ ଓଡ଼ିଶା ଦଖଲ କରିବା ପରେ କର୍ଣ୍ଣେଲ ହାରକୋର୍ଟ୍ ଓ ମିଃ ମେଲଭିଲ୍ ଓଡ଼ିଶା ସୁବାର

ଶାସନକର୍ତ୍ତା ଭାବରେ ନିଯୁକ୍ତି ପାଇ ଗଡ଼ଜାତ ରାଜା ଓ ଜମିଦାରମାନଙ୍କଠାରୁ ଚୁକ୍ତିପତ୍ର ସ୍ୱାକ୍ଷରିତ କଲେ । ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜାମାନଙ୍କ ସହିତ ଚୁକ୍ତି କରି ସାରିବା ପରେ କମ୍ପାନୀ ସରକାର ସମଗ୍ର ଦେଶର ମାଲିକ ହୋଇଯାଇଥିଲେ ।

୧୮୦୪ ମସିହାରେ ଖୋରଧାର ବରୁଣେଇ ପାହାଡ଼ ନିକଟରେ ଥିବା ଦୁର୍ଗକୁ ବ୍ରିଟିଶମାନେ ତିନି ସପ୍ତାହ ଧରି ଅବରୋଧ କରି ତୋପ ମାଡ଼ରେ ଗଡ଼କୁ ଭୂଲୁଣ୍ଠିତ କଲେ ଏବଂ ଖୋରଧା ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ ଓ ବିଦ୍ରୋହୀ ବୋଲି ଘୋଷଣା କଲେ । ପରିଶେଷରେ ରାଜା ଏବଂ ତାଙ୍କର ପ୍ରଧାନ ରାଜନୈତିକ ପରାମର୍ଶଦାତା, ଜୟୀ ରାଜଗୁରୁ ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ମୁକୁନ୍ଦଦେବ ନିଜକୁ ରକ୍ଷା କରିବା ଲାଗି ଜୟୀ ରାଜଗୁରୁଙ୍କ ପ୍ରରୋଚନାକ୍ରମେ ବିଦ୍ରୋହ ହୋଇଛି ବୋଲି ବ୍ରିଟିଶ୍‌ମାନଙ୍କୁ ଦେଇଥିବା ପ୍ରାର୍ଥନା ପତ୍ରରେ ଜଣେଇବା ପରେ ତାଙ୍କୁ ମେଦିନୀପୁର ଜେଲ୍‌ରୁ ମୁକ୍ତି ଦିଆଗଲା ଏବଂ ପୁରୀ ଜଗନ୍ନାଥ ମନ୍ଦିର ପରିଚାଳନା ଦାୟିତ୍ୱ ଅର୍ପଣ କରାଗଲା । ଜୟୀ ରାଜଗୁରୁ ଇଂରେଜମାନଙ୍କୁ ଠୋକ୍‌ଠାକ୍ ଜବାବ ଦେଇଥିବାରୁ ମେଦିନୀପୁରର ବାସିତୋଟାଠାରେ ବରଗଛର ଦୁଇ ଡାଳରେ ତାଙ୍କର ଦୁଇ ଗୋଡ଼କୁ ବାନ୍ଧି ଛାଡ଼ି ଦିଆଯାଇଥିଲା । ଫଳରେ ରାଜଗୁରୁଙ୍କ ଶରୀର ଦୁଇଫାଳ ହୋଇଯାଇଥିଲା । ରାଜଗୁରୁଙ୍କ ପୈଶାଚିକ ହତ୍ୟା ପାଇକମାନଙ୍କୁ ବିଶେଷ କ୍ଷୁବ୍ଧ କରିଥିଲା ଏବଂ ସେମାନଙ୍କ ମଧ୍ୟରେ ବ୍ରିଟିଶ୍ ବିରୋଧୀ ମନୋଭାବ ସୃଷ୍ଟି ହେବାରେ ସହାୟକ ହୋଇଥିଲା ।

## ପାଇକ ବିଦ୍ରୋହର ଅର୍ଥନୈତିକ ଓ ସାମାଜିକ କାରଣ :

ପାଇକମାନଙ୍କ ନିଷ୍କର ପାଇକ ଜାଗିର ଉପରେ କରଧାର୍ଯ୍ୟ, ଘନଘନ ବନ୍ଦୋବସ୍ତ ଫଳରେ କର ବୃଦ୍ଧି ଓ ଖଜଣା ଅନାଦେୟରେ ଜମି ନିଲାମ, କଉଡ଼ି ପରିବର୍ତ୍ତେ ଟଙ୍କା ଆକାରରେ ଖଜଣା ଗ୍ରହଣ, ପାଇକମାନଙ୍କୁ ସ୍ୱାଧୀନଚେତା ମନୋବୃତ୍ତି ଏବଂ ମର୍ଯ୍ୟାଦାପୂର୍ଣ୍ଣ ସାମାଜିକ ଚଳଣୀ ସମ୍ବନ୍ଧରେ ଇଂରେଜ କର୍ମଚାରୀମାନଙ୍କ ଅଜ୍ଞତା ଏବଂ ସର୍ବୋପରି ଇଂରେଜ ପଦସ୍ଥ ଅଫିସର ଓ ଅଧସ୍ତନ ବଙ୍ଗାଳୀ ଅମଲାମାନଙ୍କ ଅର୍ଥନୈତିକ ଶୋଷଣ ଓ ଜୁଲମ ଯୋଗୁ ହିଁ ପାଇକ ବିଦ୍ରୋହ ସଙ୍ଗଠିତ ହୋଇଥିଲା ବକ୍ସିଜଗବନ୍ଧୁଙ୍କଠାରୁ ଅନ୍ୟାୟ ଭାବେ ଇଂରେଜମାନଙ୍କ ଦ୍ୱାରା ଜମିଦାରୀ ଉଚ୍ଛେଦ ଫଳରେ ହିଁ ଉକ୍ତ ବିଦ୍ରୋହ ତ୍ୱରାନ୍ୱିତ ହୋଇଥିଲା ।

ଖୋର୍ଦ୍ଧା ଖାସ୍‌ମହାଲରେ ପରିଣତ ହେବା ପରେ ପାଇକମାନେ ଆବହମାନ କାଳରୁ ଭୋଗ କରୁଥିବା ନିଷ୍କର ଜାଗିର ଜମିକୁ ନେଜର ଫେଚର ଛଡ଼ାଇ ନେଲେ । ୧୮୦୫ ଓ ୧୮୧୭ ମସିହା ମଧ୍ୟରେ ବାରମ୍ବାର ଭୂ-ବନ୍ଦୋବସ୍ତ କରାଯାଇ ନୂତନ କରଧାର୍ଯ୍ୟ କରାଯାଇଥିଲା । ଏ ସମ୍ବନ୍ଧରେ ତତ୍କାଳୀନ କଟକ କଲେକ୍ଟର **William Trower**ଙ୍କ ରିପୋର୍ଟ ବିଶେଷ ପ୍ରଣିଧାନ ଯୋଗ୍ୟ । **Trower**ଙ୍କ ବିବରଣୀରେ ଉଲ୍ଲେଖ ହୋଇଥିବା କେତେକ ଅଂଶ ନିମ୍ନରେ ପ୍ରଦାନ କରାଯାଉଛି ।

**"Besides regular land revenue, the ryots were over burdened with many unauthorised abwabs and impositions. The demands were nearly arbitary and certainly opperessive."**

ପାଇକ ବିଦ୍ରୋହର କାରଣ ସମ୍ବନ୍ଧରେ ଏକ ରିପୋର୍ଟ ପ୍ରସ୍ତୁତ କରିବା ନିମିତ୍ତ ନିଯୁକ୍ତ ଅନୁସନ୍ଧାନକାରୀ କମିଶନର W. Ewer ଖୋରଧା ଅଞ୍ଚଳରେ ଭୂ-ରାଜସ୍ୱ ବୃଦ୍ଧି କିଭଳି ଖୁବ୍ କମ ସମୟ ମଧ୍ୟରେ ଆକାଶଛୁଆଁ ହୋଇଥିଲା ସେ ସମ୍ବନ୍ଧରେ ବିବରଣୀ ଦେଇ ଲେଖିଛନ୍ତି ।

**"The taxation on the ryots in 1815-16 was as high as twice the Jama of 1804–1805.**

**x x x x x x**

**It is now well-known and generally admitted that previous to insurrection, Khurda was becoming strikingly depopulated. At least 5,000 to 6,000 families of ryots had deserted. The miserable remnants after dispossessing themselves of their little all-their clothes, funiture, cooking utensils and sometimes their wives and children, existed of course in a state of desperate misery and irritation.**

ସେତେବେଳେ ଓଡ଼ିଶାରେ ମୁଖ୍ୟତଃ ବଙ୍ଗାଳୀମାନେ ବ୍ରିଟିଶ୍ ସରକାରଙ୍କ ଅଧୀନସ୍ଥ କର୍ମଚାରୀ ଥିଲେ । ଇଂରେଜମାନେ ବଙ୍ଗାଳୀମାନଙ୍କ ଉପରେ ନିର୍ଭର କରି ଶାସନ କାର୍ଯ୍ୟ କରୁଥିବାରୁ ତାହାର ସୁବିଧା ନେଇ ସେମାନେ ପ୍ରଜାମାନଙ୍କ ଉପରେ କର ଆଦାୟ ନାମରେ ଜୁଲମ୍ ଓ ଅତ୍ୟାଚାର କରୁଥିଲେ ।

ଇଂରେଜ ରାଜତ୍ୱ ପୂର୍ବରୁ ଭୂ-ରାଜସ୍ୱ ଶସ୍ୟ କିମ୍ବା କଉଡ଼ି ଆକାରରେ ନିଆ ଯାଉଥିଲା । ହେଲେ ଇଂରେଜ ଶାସନ ସମୟରେ କଉଡ଼ି ପ୍ରତିବଦଳରେ ଭୂରାଜସ୍ୱ ଟଙ୍କା ଆକାରରେ ଗ୍ରହଣ କରାଗଲା । ଗୋଟିଏ ଟଙ୍କାର ମୂଲ୍ୟ ୫,୧୨୦ କଉଡ଼ି ରୂପେ ସ୍ଥିର କରାଗଲା । ଶା ମହାଜନଙ୍କଠାରେ କଉଡ଼ି ବଦଳରେ ନେଲେ ପ୍ରତି ଟଙ୍କା ପିଛା ୭,୬୮୦ଟି କଉଡ଼ି ସାଧାରଣ ଲୋକଙ୍କୁ ଦେବାକୁ ପଡୁଥିଲା । ଏତଦ୍ ବ୍ୟତୀତ ସରବରାକାର ଏବଂ ରାଜସ୍ୱ ଆଦାୟ କାରୀ କର୍ମଚାରୀମାନଙ୍କ ବଟି ଆଦାୟ ମଧ୍ୟ ଥିଲା । ସରକାରଙ୍କ ନୂତନ ରାଜସ୍ୱ ନୀତି ଓ ନିୟମ ଯୋଗୁଁ ନିଷ୍କର ବୃତ୍ତିଭୋଗୀ ପାଇକମାନେ ବିଶେଷ କ୍ଷତିଗ୍ରସ୍ତ ହେଲେ ଏବଂ ସେମାନଙ୍କର ଅର୍ଥନୈତିକ ପରିସ୍ଥିତି ବିଶେଷ ଖରାପ ଆଡ଼କୁ ଗତି କଲା । ରାଜସ୍ୱ ଦେଇ ନ ପାରି ଅନେକ ରୟତ ଜମି ହରାଇଲେ । ଗଭର୍ଣ୍ଣର ଜେନେରାଲ୍ ଲର୍ଡ଼ ଓ୍ୱେଲ୍‌ସଲି ଓଡ଼ିଶାରେ ବଙ୍ଗ ପ୍ରଦେଶ ପରି ୧୮୧୫ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ

କରିବା ପାଇଁ ଘୋଷଣା କରିଥିଲେ ମଧ୍ୟ ବାରମ୍ବାର ଭୂ-ବନ୍ଦୋବସ୍ତ କରାଯାଇ କରବୃଦ୍ଧି କରାଯାଇଥିଲା ।

ରାଜାଙ୍କ ଶାସନ ସମୟରେ ରାଜ କର୍ମଚାରୀ ଖଜଣା ବାକୀ ଯୋଗୁଁ ଅତ୍ୟାଚାର କଲେ ସନ୍ତୁଷ୍ଟ ପ୍ରଜାଗଣ ଆପତ୍ତି ଅଭିଯୋଗ କରି ନ୍ୟାୟ ବିଚାର ପାଉଥିଲେ । ଇଂରେଜ ଶାସନ ଅମଳରେ ଅଣଓଡ଼ିଆ କର୍ମଚାରୀମାନେ କୌଣସି ଅଭିଯୋଗ ଶୁଣିବା ପରିବର୍ତ୍ତେ ୧୮୦୬ ମସିହାରେ ଖଜଣା ଅନାଦେୟରେ ସମ୍ପତ୍ତି ନିଲାମ ପ୍ରଥା ପ୍ରବର୍ତ୍ତିତ କରାଗଲା । ଓଡ଼ିଶାର ଜମିଦାରୀ କୋଲିକତାରେ ନିଲାମ୍ ହେବା ଯୋଗୁଁ ଖଜଣା ଠିକ୍ ସମୟରେ ପଇଠ କରି ନ ପାରି ବହୁ ପ୍ରାଚୀନ ଓଡ଼ିଆ ସମ୍ଭ୍ରାନ୍ତ ପରିବାର ତଳି ତଳାନ୍ତ ହୋଇଗଲେ । ଅନ୍ୟ ପକ୍ଷରେ, କଲିକତାର ବଙ୍ଗାଳୀମାନେ ଅତି ଶସ୍ତା ମୂଲ୍ୟରେ ଓଡ଼ିଶାର ବଡ଼ ବଡ଼ ଜମିଦାରୀମାନ ନିଲାମ ନେଇ ରାତାରାତି ଜମିଦାର ପାଲଟିଗଲେ । ଘନ ଘନ ଜମି ବନ୍ଦୋବସ୍ତ କରାଯାଇ କମ୍ପାନୀ ସରକାର ପାଇକ, ଦଳେଇ ଓ ଦଳବେହେରାମାନଙ୍କ ରାଜ ଦତ୍ତ ଯାଗିରି ଜମି ସେମାନଙ୍କ ମାଲିକାନାରୁ କାଢ଼ିନେଲେ ।

## ଇଂରେଜମାନଙ୍କ ଏକ ଗୁଟିଆ ଲୁଣ ମରା ଅଧିକାର :

ଓଡ଼ିଶା ଅଧିକାର କରିବା ପରେ କମ୍ପାନୀ ସରକାର ସାଧାରଣ ପ୍ରଜା ସମୁଦ୍ର ଓ ଚିଲିକାରୁ ଲୁଣ ମାରି ପାରିବେ ନାହିଁ ବୋଲି ଆଇନ ପ୍ରଣୟନ କରି ନିଷେଧାଜ୍ଞା ଜାରି କଲେ । ଫଳରେ, ଇଚ୍ଛା ନ ଥିଲେ ମଧ୍ୟ ଲୋକମାନେ ଇଂଲଣ୍ଡରୁ ଆମଦାନୀ କରାଯାଉଥିବା ଲୁଣ କିଣିବା ପାଇଁ ବାଧ୍ୟ ହେଲେ ।

ଏତଦ୍ ବ୍ୟତୀତ କୋର୍ଟ, କଚେରୀ, ଥାନା ଏବଂ ଲୁଣ ବ୍ୟବସାୟ ବିଭାଗ ଇତ୍ୟାଦିରେ ଓଡ଼ିଆ ଅମଲା ପରିବର୍ତ୍ତେ ମୁଖ୍ୟତଃ ଓଡ଼ିଶା ବାହାରୁ ଆସିଥିବା ବଙ୍ଗାଳୀ ଓ ମୁସଲମାନମାନେ ନିଯୁକ୍ତି ପାଉଥିଲେ । ଉକ୍ତ କର୍ମଚାରୀମାନେ ସାଧାରଣ ପ୍ରଜାମାନଙ୍କ ପ୍ରତି କଠୋର କଦର୍ଯ୍ୟ ବ୍ୟବହାର ପ୍ରଦର୍ଶନ କରୁଥିଲେ । ଅତ୍ୟନ୍ତ ଦୁର୍ନୀତି ପରାୟଣ ଥିଲେ । ତତ୍କାଳୀନ ଅମଲାମାନଙ୍କ ଦୁର୍ନୀତି ସମ୍ବନ୍ଧରେ W. Ewer ଲେଖିଛନ୍ତି : "Almost all Amalas thrived on the business of loot, plunder and speculation."

## ବକ୍ସିଜଗବନ୍ଧୁଙ୍କ ପ୍ରତି ଅନ୍ୟାୟ ଆଚରଣ :

ଖୋର୍ଦ୍ଧା ରାଜାଙ୍କ ମୁଖ୍ୟ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ସମୃଦ୍ଧିଶାଳୀ ରୋଡ଼ଙ୍ଗ କିଲ୍ଲାର ଅଧିକାରୀ ଥିଲେ । ସେ ଖୋର୍ଦ୍ଧା ଅଞ୍ଚଳରେ ପଦବୀ ଓ ସାହ୍ୟା ଦୃଷ୍ଟିକୋଣରୁ ଜଣେ ବିଶେଷ ସମ୍ମାନାସ୍ପଦ ରାଜ ପୁରୁଷ ଥିଲେ ।

କଟକରେ ଅବସ୍ଥାପିତ କଲେକ୍ଟର୍ ଚାର୍ଲସ୍ ଗ୍ରୋମ୍‌ଙ୍କ ବଙ୍ଗାଳୀ କର୍ମଚାରୀ କୃଷ୍ଣଚନ୍ଦ୍ର ସିଂହ ଚାକିରୀକାଳ ମଧ୍ୟରେ ଅସତ୍ ଉପାୟରେ ଉପାର୍ଜିତ ଅର୍ଥବଳରେ "ରାହାଙ୍ଗ" ଜମିଦାରୀ ହସ୍ତଗତ କରି କଟକରେ ବାସ କରୁଥିଲେ । ଏକ ସୁପରିକଳ୍ପିତ ଷଡ଼ଯନ୍ତ୍ର କରି ସେ ବକ୍ସି ଜଗବନ୍ଧୁଙ୍କ "ରୋଡ଼ଙ୍ଗ କିଲ୍ଲା"ର ଅଧିକାରୀ ହେବା ପାଇଁ ମନ ବଳାଇଲେ । ଉକ୍ତ ଷଡ଼ଯନ୍ତ୍ରରେ ତାଙ୍କ ଭାଇ ଗୌରହରି ସିଂହ ଓ ଅନ୍ୟତମ ଆତ୍ମୀୟ ଚନ୍ଦ୍ରପ୍ରସାଦ ସିଂହ ବିଶେଷ ସହଯୋଗ କରିଥିଲେ । ବକ୍ସି "ରୋଡ଼ଙ୍ଗ କିଲ୍ଲା"ର ଖଜଣା କଟକ କଲେକ୍ଟରଙ୍କ ଟ୍ରେଜେରୀରେ ପଇଠ କରୁଥିଲେ । କୃଷ୍ଣଚନ୍ଦ୍ର ସିଂହଙ୍କ ପ୍ରସ୍ତାବ କ୍ରମେ କଟକଠାରେ ଖଜଣା ନ ଦେଇ ସେ ପୁରୀରେ ଖଜଣା ଜମା କରିବା ଆରମ୍ଭ କଲେ । କାରଣ ପୁରୀ କଟକ ଅପେକ୍ଷା ବକ୍ସିଙ୍କୁ କମ୍‌ବାଟ ଥିଲା । ଖଜଣା ଦାଖଲ ସମୟରେ ସରକାରୀ କାଗଜପତ୍ରରେ "ରାହାଙ୍ଗ ଓଗେର" ବୋଲି ରେକର୍ଡ଼ କରାଯାଇ ବକ୍ସିଙ୍କ "ରୋଡ଼ଙ୍ଗ କିଲ୍ଲା"ର ଖଜଣା ଗ୍ରହଣ କରାଗଲା । କୃଷ୍ଣଚନ୍ଦ୍ର ସିଂହଙ୍କ ଚତୁର ଜାଲରେ ବକ୍ସି ନିଜ ଅଜାଣତରେ ଛନ୍ଦି ହୋଇଗଲେ । ୧୮୦୯ ମସିହାରେ ସରକାରୀ ରେକର୍ଡ଼ରେ ଥିବା ପ୍ରଗଣା "ରାହାଙ୍ଗ ଓଗେର" ବିକ୍ରି ପାଇଁ ସରକାରଙ୍କ ବିଜ୍ଞପ୍ତି ଜାରି କରାଗଲା । ଚତୁର କୃଷ୍ଣଚନ୍ଦ୍ର ସିଂହ ଲିଜ୍ ସୂତ୍ରରେ ପୁନର୍ବାର ଉକ୍ତ ଭୂମିକୁ ଜବତ କରି "ରୋଡ଼ଙ୍ଗ କିଲ୍ଲା" ଉପରେ ଜବରଦସ୍ତି ମାଲିକନା ସାବ୍ୟସ୍ତ କରିବା ପାଇଁ ନିଜ ଲୋକ ପଠାଇଲେ । ବକ୍ସିଙ୍କ ଲୋକମାନେ ପ୍ରତିରୋଧ କରିବାରୁ କୃଷ୍ଣଚନ୍ଦ୍ର ସିଂହ ଦଖଲ ନେଇ ପାରିଲେ ନାହିଁ । ୧୮୧୩ ମସିହାରେ କୃଷ୍ଣଚନ୍ଦ୍ର ସିଂହ ପୁନର୍ବାର "ରୋଡ଼ଙ୍ଗ କିଲ୍ଲା"ର ଲିଜ୍ ନେଲେ । ଏ ସମ୍ବନ୍ଧରେ ବକ୍ସି ତତ୍କାଳୀନ ସେଟେଲମେଣ୍ଟ କମିଶନର ରିଚାର୍ଡସନ୍‌ଙ୍କ ପାଖରେ ଦରଖାସ୍ତ ପେଶ୍ କଲେ । ହେଲେ ତାଙ୍କୁ ନ୍ୟାୟ ମିଳି ନାହିଁ ଏବଂ ନିଜ ଇଚ୍ଛା ବିରୁଦ୍ଧରେ ବକ୍ସି ପରିବାର ଦେବାଳିଆ ହୋଇଗଲେ । ବ୍ରିଟିଶ ସରକାରଙ୍କ ଅନ୍ୟାୟ ବିରୁଦ୍ଧରେ ପ୍ରତିଶୋଧ ନେବା ପାଇଁ ପୁରୁଷ ସିଂହ ବକ୍ସି ଖୋର୍ଦ୍ଧାର ନିଷ୍କର ଜାଗିର ହରାଇଥିବା ପାଇକ, ଦଳେଇ, ଦଳବେହେରା ଏବଂ ପାଇକ ସର୍ଦ୍ଦାରମାନଙ୍କୁ ଏକତ୍ରିତ କରି ବିଦ୍ରୋହ ଅଗ୍ନି ପ୍ରଜ୍ୱଳନ କରିଥିଲେ ।

## ପାଇକ ବିଦ୍ରୋହ ଆରମ୍ଭ :

୧୮୧୭ ମସିହାରେ ଘୁମୁସର ରାଜା ଶ୍ରୀ କର ଭଞ୍ଜଙ୍କ ବନ୍ଦୀ ପାଇଁ ଦାୟୀ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ତାଙ୍କର ଅନୁଗତ ୪୦୦ କନ୍ଧ ପ୍ରଜା ବିଭିନ୍ନ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ବାଣପୁର ଅଞ୍ଚଳକୁ ପ୍ରବେଶ କଲେ । ବକ୍ସି ଜଗବନ୍ଧୁ ବିଦ୍ରୋହର ଏହା ସୁବର୍ଣ୍ଣ ସୁଯୋଗ ମନେ କରି ପାଇକ ବାହିନୀ ସହ ବାଣପୁର ଅଗ୍ରସର ହେଲେ । ଉକ୍ତ ବିଦ୍ରୋହରେ ଖୋର୍ଦ୍ଧା ଅଞ୍ଚଳର ପ୍ରାୟ ସମସ୍ତ ଦଳେଇ, ଦଳବେହେରା ଏବଂ ପାଇକ ସର୍ଦ୍ଦାରମାନେ ଯୋଗ ଦେଇ ବିଦ୍ରୋହକୁ ବଳଶାଳୀ କରିଥିଲେ । ବିଦ୍ରୋହୀମାନେ ବାଣପୁର ପୁଲିସ ଥାନାରେ ଅଗ୍ନି ସଂଯୋଗ କରି ପୁଲିସ୍ କର୍ମଚାରୀମାନଙ୍କୁ ହତ୍ୟା କଲେ ଏବଂ ବ୍ରିଟିଶ ଖଜଣାଖାନା ଲୁଟ କରି ଇଂରେଜ ଏବଂ ଇଂରେଜ ସମର୍ଥକମାନଙ୍କୁ ନିର୍ମମ ଭାବରେ ହତ୍ୟା କଲେ । ବାଣପୁରରେ ଅବସ୍ଥାପିତ ବ୍ରିଟିଶ ଲୁଣ ଏଜେଣ୍ଟ ବେକର ସାହେବ ବିଦ୍ରୋହୀମାନଙ୍କ କବଳରୁ ଅଳ୍ପକେ ଖସି ଯାଇଥିଲେ ମଧ୍ୟ ଚିଲିକାରେ ଥିବା ତାଙ୍କ ବାଣିଜ୍ୟ ତରୀକୁ ବିଦ୍ରୋହୀମାନେ ଲୁଟ୍ କଲେ । ବାଣପୁରଠାରେ ଖୋର୍ଦ୍ଧା ଆଡ଼କୁ ବିଦ୍ରୋହୀମାନେ

ଅଗ୍ରସର ହେଉଥିବା ଖବର ପାଇ ଇଂରେଜମାନେ ଭୟରେ ଖୋର୍ଦ୍ଧାରୁ ପଳାୟନ କଲେ । ବିଦ୍ରୋହୀମାନେ ରଥିପୁର ଗ୍ରାମରେ ଥିବା ବ୍ରିଟିଶ ସାହାଯ୍ୟକାରୀ ଦେଶଦ୍ରୋହୀ ଚରଣ ପଟ୍ଟନାୟକଙ୍କୁ ନିର୍ମମ ଭାବରେ ହତ୍ୟା କଲେ । କ୍ରମେ ଖୋର୍ଦ୍ଧା ନିକଟବର୍ତ୍ତୀ ପାଇଗଡ଼ ଓ ବୋଲଗଡ଼ ଅଞ୍ଚଳକୁ ବିଦ୍ରୋହ ବ୍ୟାପିଗଲା । ହେଲେ ଗଡ଼ଜାତ ରାଜ୍ୟର ଶାସକମାନଙ୍କ ସହଯୋଗର ଅଭାବ ଯୋଗୁଁ ପାଇକ ବିଦ୍ରୋହ ସେ ଅଞ୍ଚଳକୁ ବ୍ୟାପି ପାରି ନଥିଲା ।

କଟକରେ ଅବସ୍ଥାପିତ ମାଜିଷ୍ଟ୍ରେଟ୍ ଇମ୍ପେ ସାହେବ ଇଣ୍ଟେଲିଜେନସ୍ ବିଭାଗର ଗୁପ୍ତ ଖବର ପାଇ ବିଦ୍ରୋହ ଦମନ ପାଇଁ ଲେଫଟ୍‌ନାଣ୍ଟ୍ ପ୍ରିଡ଼ଅକ୍ସୁ ଖୋର୍ଦ୍ଧା ଏବଂ ଲେଫଟ୍‌ନାଣ୍ଟ୍ ଫାରିସ୍‌ଙ୍କୁ ପିପିଲି ପ୍ରେରଣ କଲେ । ନିଜେ ଇମ୍ପେ ସାହେବ ଲେଫଟ୍‌ନାଣ୍ଟ୍ ଟ୍ରାଭିସ୍ ଓ କେତେକ ଇଂରେଜ ସିପାହୀଙ୍କ ସହ ୧୮୧୭ ମସିହା ଅପ୍ରେଲ ୧ ତାରିଖରେ ଖୋର୍ଦ୍ଧା ନିକଟବର୍ତ୍ତୀ ଗଙ୍ଗପଡ଼ାରେ ପହଞ୍ଚି ବିଦ୍ରୋହୀମାନଙ୍କ ରଣ ସଜ୍ଜାରେ ଭୟଭୀତ ହୋଇ କଟକ ଫେରି ଯାଇ ନିମ୍ନମତେ ରିପୋର୍ଟ କରିଥିଲେ ।

"This instant I returned after a most fatiguing marh of a day and night from Khurda. I can only write for the information of his Lordship in Council that my retreat was forced and that the whole of Khurda territory is in a complete state of insurrection."

ଲେଫଟ୍‌ନାଣ୍ଟ୍ ପାରିସ୍‌ଙ୍କୁ ଗଙ୍ଗପଡ଼ାରେ ବିଦ୍ରୋହୀ ପାଇକମାନେ ଗୁଳି କରି ହତ୍ୟା କଲେ । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୫,୦୦୦ (ପାଞ୍ଚ ହଜାର) ପାଇକ ଲେଫଟନାଣ୍ଟ ପ୍ରିଡ଼ିଅକ୍ସୁ ଖୋର୍ଦ୍ଧାଠାରେ ଆକ୍ରମଣ କରିବା ପାଇଁ ଅଗ୍ରସର ହେବା ଦେଖି ସେ କୌଣସି ମତେ ନିଜ ପ୍ରାଣ ବଞ୍ଚାଇ ଭୟରେ ପିପିଲି ବାଟ ଦେଇ କଟକକୁ ଫେରି ଗଲେ ।

ଅପ୍ରେଲ୍ ୭ ତାରିଖ ୧୮୧୭ରେ ବିଦ୍ରୋହୀମାନେ ପିପିଲି ଅଧିକାର କରିବା ପରେ ଗଡ଼ ପଦ୍ମପୁରର ରାଜା ବଳଭଦ୍ର ଛୋଟରାୟ ବିଦ୍ରୋହରେ ଯୋଗ ଦେଲେ । ପୁରୀ ସହରକୁ ବିଦ୍ରୋହୀମାନଙ୍କ କବଳରୁ ରକ୍ଷା କରିବା ପାଇଁ ଏବଂ ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ଗତିବିଧି ଲକ୍ଷ୍ୟ କରିବା ପାଇଁ କ୍ୟାପଟେନ୍ ୱେଲିଙ୍ଗଟନ୍‌ଙ୍କୁ ପ୍ରେରଣ କରାଗଲା । ଅପ୍ରେଲ୍ ୯ ତାରିଖ ୧୮୧୭ ମସିହାରେ କ୍ୟାପଟେନ୍ ଲେ, ଫେବରେ ୫୫୦ ଜଣ ସିପାହୀଙ୍କ ସହ ଖୋର୍ଦ୍ଧା ଯାତ୍ରା କରି ବିନା ପ୍ରତିରୋଧରେ ଖୋର୍ଦ୍ଧା ପୁନଃ ଅଧିକାର କଲେ । ଠିକ୍ ସେହିଦିନ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବିପୁଳ ସଂଖ୍ୟକ ପାଇକ ଲୋକନାଥ ଘାଟ ଦେଇ ପୁରୀରେ ପ୍ରବେଶ କଲେ । ବିଦ୍ରୋହୀମାନେ ସରକାରୀ କୋଠା ଓ କଚେରୀରେ ଅଗ୍ନି ସଂଯୋଗ କଲେ । ପୁରୀରେ ଥିବା ଇଂରେଜ କର୍ମଚାରୀମାନେ ଭୟରେ କଟକ ପଳାୟନ କଲେ । ଜଗନ୍ନାଥ ମନ୍ଦିରର ପଣ୍ଡା ଓ ସେବାୟତଗଣ ଓଡ଼ିଶାରୁ ବ୍ରିଟିଶ ଶାସନ ଲୋପ ହେଲା ବୋଲି ସର୍ବସାଧାରଣରେ ଘୋଷଣା କଲେ । ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ଖୋର୍ଦ୍ଧା ଗାଦିରେ ପୁନର୍ବାର ଅଭିଷିକ୍ତ କରିବା ପ୍ରସ୍ତାବ ନେଇ ବକ୍ସି ଜଗବନ୍ଧୁ ଏବଂ ବିଦ୍ରୋହୀ ପାଇକମାନେ ଶ୍ରୀନଅରକୁ ଗଲେ । ହେଲେ ବକ୍ସିଙ୍କ ପ୍ରସ୍ତାବରେ ରାଜି ହେବା ପରିବର୍ତ୍ତେ ଗୁପ୍ତ ପତ୍ର ଜରିଆରେ ରାଜା ବ୍ରିଟିଶ କର୍ତ୍ତୃପକ୍ଷଙ୍କ ସାମରିକ ସାହାଯ୍ୟ ପାଇଁ ନିବେଦନ କରିଥିଲେ ।

## ବିଦ୍ରୋହ ଦମନ ପାଇଁ ବ୍ରିଟିଶ ସରକାରଙ୍କ ପଦକ୍ଷେପ :

ବିଦ୍ରୋହ ଦମନ ପାଇଁ ବ୍ରିଟିଶ ସରକାର ପ୍ରଥମେ ଖୋର୍ଦ୍ଧା, ଲେମ୍ବାଇ ପ୍ରଗଣା, ପୁରୀ ଓ କୋଠ ଦେଶ ଅଞ୍ଚଳରେ ସାମରିକ ଆଇନ ଜାରି କଲେ । ମେଜର ଜେନେରାଲ ଗେବ୍ରିଏଲ୍ ମାର୍ଟିନଡେଲ ମିଲିଟାରୀ କମିଶନର ଭାବରେ ନିଯୁକ୍ତି ପାଇ କଟକରେ ଅବସ୍ଥାନ କଲେ । ଅପ୍ରେଲ ୧୬ ତାରିଖ ୧୮୧୭ ମସିହାରେ କ୍ୟାପଟେନ୍ ଲେ ଫେବରେ ଖୋର୍ଦ୍ଧାଠାରୁ ପୁରୀ ଯାଇ ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ଗିରଫ ଓ ବନ୍ଦୀ କଲେ । ଅପ୍ରେଲ ୨୮ ତାରିଖ ୧୮୧୭ରେ ମେଜର ହାମିଲଟନ୍ ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ଏବଂ ତାଙ୍କ ପୁତ୍ରଙ୍କୁ ବାରବାଟି ଦୁର୍ଗରେ ବନ୍ଦୀ କରି ରଖିଥିଲେ ।

ଏହା ସତ୍ତ୍ୱେ ଗୋପ, ଟିରଣ, କୁଜଙ୍ଗ, ପଟାମୁଣ୍ଡାଇ ଏବଂ ଅସୁରେଶ୍ୱର ଅଞ୍ଚଳକୁ ବିଦ୍ରୋହ ବ୍ୟାପିଗଲା । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହୀ ପାଇକମାନେ ଇଂରେଜ ସମର୍ଥକ ଜମିଦାର ଓ ଅମଲାମାନଙ୍କ ସମ୍ପତ୍ତି ଲୁଟ କରିବାକୁ ଲାଗିଲେ ।

ଗୋପ ଅଞ୍ଚଳରେ କରୁଣାକର ସର୍ଦ୍ଦାରଙ୍କ ନେତୃତ୍ୱରେ ପାଇକମାନେ ଥାନା ଆକ୍ରମଣ କରି ପୋଲିସ୍‌ମାନଙ୍କୁ ତଡ଼ି ଦେଇଥିଲେ । କ୍ୟାପଟେନ୍ ଫେଟ୍‌ଫୁଲ ଏଠାରେ ବିଦ୍ରୋହ ଦମନ କରିବାକୁ ସମର୍ଥ ହୋଇଥିଲେ ।

କୁଜଙ୍ଗ ଅଞ୍ଚଳରେ ରାଜା ମଧୁସୂଦନ ଖେଣ୍ଡ ପାଇକମାନଙ୍କୁ ଗୁପ୍ତରେ ସାହାଯ୍ୟ କରିଥିଲେ । କୁଜଙ୍ଗରେ ସର୍ବଶ୍ରୀ ମଧୁସୂଦନ ମଙ୍ଗରାଜ, ବାମଦେବ ପଟ୍ଟଯୋଷୀ, ନାରାୟଣ ପରମଗୁରୁ ପ୍ରମୁଖ ପାଇକ ବିଦ୍ରୋହର ନେତୃତ୍ୱ ନେଇଥିଲେ । କ୍ୟାପଟେନ୍ କେନେଟ୍ ୨୩, ସେପ୍ଟେମ୍ବର ୧୮୧୭ ମସିହାରେ ଦୁଇ ହଜାର ବ୍ରିଟିଶ ସୈନ୍ୟଙ୍କ ସହ କୁଜଙ୍ଗ ଯାତ୍ରା କରି ବାଲୁକେଶ୍ୱର ଦାସ ଓ କୃପାସିନ୍ଧୁ ଛାମୁକରଣଙ୍କ ସହାୟତାକ୍ରମେ ବିଦ୍ରୋହ ଦମନ କରିବାକୁ ସମର୍ଥ ହୋଇଥିଲେ ।

## ବିଦ୍ରୋହୀମାନଙ୍କ ବିଚାର ଓ ଦଣ୍ଡ :

ଭବିଷ୍ୟତରେ ଯେଉଁଭଳି ଆଉ ଏକ ବିଦ୍ରୋହ ସଙ୍ଗଠିତ ନ ହୁଏ ସେଥି ଲାଗି ବ୍ରିଟିଶ ସରକାର କଠୋର ପଦକ୍ଷେପ ଗ୍ରହଣ କରିଥିଲେ । ବିଦ୍ରୋହୀ ଓ ଯୁଦ୍ଧବନ୍ଦୀମାନଙ୍କ ବିଚାର ପାଇଁ W. Ewer (ୱାଲଟର ଇଓୟର) ଏବଂ ଗେବ୍ରିଏଲ ମାର୍ଟିନ୍‌ଡେଲ୍‌ଙ୍କୁ ନେଇ ଏକ କମିଟି ଗଠନ କରାଗଲା । ପାଇକ ବିଦ୍ରୋହର କାରଣ ନିର୍ଦ୍ଦେଶ ଏବଂ ଭବିଷ୍ୟତରେ ଯେଉଁଭଳି ପୁନର୍ବାର ବିଦ୍ରୋହର ଅଭ୍ୟୁଦୟ ନ ଘଟେ ସେଥିଲାଗି ବିଭିନ୍ନ ପ୍ରସ୍ତାବ ଦେ

ରହିବା ପାଇଁ ପ୍ରସ୍ତୁତ କରିବା ପାଇଁ ସେମାନଙ୍କୁ ଆଦେଶ ଦିଆଗଲା ।

ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ନଭେମ୍ବର ୩୦ ତାରିଖ ୧୮୧୭ରେ କାରାଗାର ମଧ୍ୟରେ ମୃତ୍ୟୁ ବରଣ କଲେ । କୁଜଙ୍ଗର ରାଜା ମଧୁସୂଦନ ଶେଷ ଆତ୍ମସମର୍ପଣ କରି କେତେକ ବିଦ୍ରୋହୀ ନେତାଙ୍କୁ ଧରାଇବାରେ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ ସହଯୋଗ କରିଥିବାରୁ ତାଙ୍କୁ ମୁକ୍ତି ଦିଆଗଲା । ବହୁ ବିଦ୍ରୋହୀଙ୍କୁ ରାଜକ୍ଷମା ଦିଆଯାଇଥିଲେ ମଧ୍ୟ ବକ୍ସି ଜଗବନ୍ଧୁ, କୃଷ୍ଣଚନ୍ଦ୍ର ବିଦ୍ୟାଧର, ଗୋପାଳ ଛୋଟରାୟ, ପୀତବାସ ମଙ୍ଗରାଜ, ପଦ୍ମନାଭ ଛୋଟରାୟ, ବିଷ୍ଣୁ ପାଟବରାୟ ଓ ପିପ୍ପିଳି ବାହୁବଳେନ୍ଦ୍ର ପ୍ରଭୃତି ନେତାମାନଙ୍କୁ ବ୍ରିଟିଶ ସରକାର ରାଜକ୍ଷମା ଘୋଷଣାରୁ ବାଦ ଦେଇଥିଲେ । ସେମାନଙ୍କୁ ମୃତ ବା ଜୀବନ୍ତ ଭାବରେ ଧରାଇ ଦେଲେ କମ୍ପାନୀ ସରକାର ଅର୍ଥ ପୁରସ୍କାର ଦେବା ପାଇଁ ଘୋଷଣା କରିଥିଲେ । ୧୨୩ ଜଣ ପାଇକ ନେତାଙ୍କୁ ଦ୍ୱୀପାନ୍ତର ଦଣ୍ଡ, କୁଜଙ୍ଗର ବାମ ଦେବ ପଟ୍ଟଯୋଷୀ ଏବଂ ନାରାୟଣ ପରମଗୁରୁଙ୍କୁ ୧୪ ବର୍ଷ ଲେଖାଁ କାରାଦଣ୍ଡ ଏବଂ ଚରଣ ପଟ୍ଟନାୟକର ହତ୍ୟାକାରୀ ପର୍ଶୁରାମ ଅରଟରାୟଙ୍କୁ ମୃତ୍ୟୁଦଣ୍ଡ ଦିଆ ଯାଇଥିଲା ।

## ବକ୍ସି ଜଗବନ୍ଧୁଙ୍କ ଆତ୍ମ ସମର୍ପଣ :

ଇଂରେଜ ସରକାରଙ୍କ ସମସ୍ତ ମୁଣ୍ଡବ୍ୟଥାର କାରଣ ଏବଂ ପାଇକ ବିଦ୍ରୋହର ମୁଖ୍ୟନେତା ବକ୍ସି ଜଗବନ୍ଧୁ ଖୋର୍ଦ୍ଧାରୁ ପଳାୟନ କରି ଘୁମୁସର ଜଙ୍ଗଲରେ ଆତ୍ମଗୋପନ କଲେ । ଘୁମୁସରଠାରୁ ସିଧାସଳଖ ନୟାଗଡ଼ ଯାଇ ସେଠାରେ କିଛିଦିନ ଅବସ୍ଥାନ ପରେ ସେ ବୌଦ ଓ ଦଶପଲ୍ଲା ଜଙ୍ଗଲ ଅଞ୍ଚଳକୁ ଗ୍ଳଳିଗଲେ । ତାଙ୍କୁ ମୃତ ବା ଜୀବନ୍ତ ଅବସ୍ଥାରେ ଧରାଇଦେଲେ ପୁରସ୍କାର ଦିଆଯିବ ବୋଲି ବ୍ରିଟିଶ ସରକାର ଘୋଷଣା କଲେ । ବକ୍ସିଙ୍କୁ ଗିରଫ କରିବା ପାଇଁ ମେଜର୍ ରୋଗ୍‌ସେଜ (Major Roughsedge) ବୌଦ ରାଜା ଚନ୍ଦ୍ରଶେଖର ଦେବଙ୍କ ସହ ସମ୍ପର୍କ ସ୍ଥାପନ କରିବା ଖବର ପାଇ ବକ୍ସି ପୁନର୍ବାର ଘୁମୁସର ଜଙ୍ଗଲରେ ଲୁଚି ରହିଲେ । ଏ ଭଳି ଦୁର୍ଦ୍ଦିନ ସମୟରେ ଖୋର୍ଦ୍ଧାବାସୀ ବକ୍ସିଙ୍କ ଭରଣପୋଷଣ ପାଇଁ ଆବଶ୍ୟକୀୟ ଅର୍ଥ ଯୋଗାଇଦେବା ଘଟଣାରୁ ତାଙ୍କ ଜନପ୍ରିୟତାର ପ୍ରମାଣ ସୁସ୍ପଷ୍ଟ ।

ବ୍ରିଗେଡ଼ିୟର ଜେନେରାଲ ଥୋମାସ୍ ଗୁପ୍ତ ଖବର ପାଇ ବକ୍ସି ଅବସ୍ଥାନ କରୁଥିବା ଘୁମୁସର ଅଞ୍ଚଳର ଏକ କନ୍ଧ ପଲ୍ଲୀକୁ ଆକସ୍ମିକ ଚଢ଼ାଉ କରିଥିଲେ ମଧ୍ୟ ବକ୍ସି ଜଗବବନ୍ଧୁଙ୍କୁ ଧରିବାରେ ବିଫଳ ହୋଇଥିଲେ । ଶେଷକୁ ଅନ୍ୟ ଉପାୟ ନ ପାଇ ବ୍ରିଟିଶ କମିଶନର ଏକ ସରକାରୀ ଘୋଷଣାନାମା ଜାରି କରି ବକ୍ସି ଆତ୍ମ ସମର୍ପଣ କଲେ । ତାଙ୍କ ଜୀବନ ପ୍ରତି କୌଣସି ଆଶଙ୍କା ନ ଥିବାର ପ୍ରତିଶ୍ରୁତି ଦେଇଥିଲେ । ହେଲେ ବକ୍ସି ଉକ୍ତ ଘୋଷଣାନାମାକୁ କର୍ଣ୍ଣପାତ କରି ନଥିଲେ ।

ପରିଶେଷରେ ବକ୍ସିଙ୍କ ଆତ୍ମ ସମର୍ପଣ ନିମିତ୍ତ ଇଂରେଜମାନେ ଏକ ଅଭିନବ ପନ୍ଥା ଅନୁସରଣ ପୂର୍ବକ ୧୮୧୯ ମସିହାରେ ତାଙ୍କର ଦୁଇପତ୍ନୀ, ନାବାଳକ ପୁତ୍ର ପୋଷ୍ୟ ପୁତ୍ର, ଗୁମାସ୍ତା, ସ୍ତକର ପ୍ରଭୃତିଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖିଲେ । ତଥାପି ବକ୍ସି ଇଂରେଜମାନଙ୍କ ନିକଟରେ ମୁଣ୍ଡ ନୁଆଁଇଲେ ନାହିଁ । ତେଣୁ ସରକାର ବାଧ୍ୟ ହୋଇ ୧୮୨୦ ମସିହାରେ ଜଗବନ୍ଧୁଙ୍କ ପରିବାରକୁ ମୁକ୍ତି ଦେଲେ ।

ଇଂରେଜ କମିଶନର ଟି: ପାକେନହାମ (T. Pakenham) ବିଟ୍ରିଶ ସରକାରଙ୍କ ସର୍ତ୍ତରେ ରାଜି ହୋଇ ଆତ୍ମ ସମର୍ପଣ କରିବା ପାଇଁ ବକ୍ସିଙ୍କୁ ପ୍ରବର୍ତ୍ତାଇବା ନିମିତ୍ତ ନୟାଗଡ଼ ରାଜାଙ୍କ ପାଖକୁ ଏକ ପରଓ୍ୱାନା ପଠାଇଲେ । ସର୍ତ୍ତ ଥିଲା ଯେ ବକ୍ସି ଜଗବନ୍ଧୁଙ୍କ ଆଜୀବନ ଭରଣ ପୋଷଣ ପାଇଁ ବ୍ରିଟିଶ ସରକାର ମାସିକ ୧୫୦ ଟଙ୍କା ଭତ୍ତା ଦେବେ । ବକ୍ସି ତାଙ୍କର ପରିବାରବର୍ଗଙ୍କ ସହ କଟକରେ ଅବସ୍ଥାନ କରିବେ ।

କଟକ ବାହାରକୁ ଯିବା ପାଇଁ ହେଲେ ବକ୍ସିଙ୍କୁ ଇଂରେଜ କମିଶନରଙ୍କ ଅନୁମତି ନେବା ପାଇଁ ପଡ଼ିବ । ଉକ୍ତ ସର୍ତ୍ତରେ ବକ୍ସିଙ୍କ ମର୍ଯ୍ୟାଦା ହାନି ଭଳି କୌଣସି କଥା ନ ଥିବାରୁ ନୟାଗଡ଼ ରାଜା ବକ୍ସି ଜଗବନ୍ଧୁଙ୍କୁ ଆତ୍ମସମର୍ପଣ ପାଇଁ ପରାମର୍ଶ ଦେଲେ । ମଇ ମାସ ୨୫ ତାରିଖ ୧୮୨୫ ମସିହାରେ ବକ୍ସି ଜଗବନ୍ଧୁ ଆତ୍ମସମର୍ପଣ କରି କଟକରେ ପରିବାର ସହ ଅବସ୍ଥାନ କଲେ । ଶେଷରେ ଉକ୍ତ ଐତିହାସିକ ପୁରୁଷ ଜାନୁଆରୀ ୨୪ ତାରିଖ ୧୮୨୯ ମସିହାରେ ଇହଲୀଳା ସମ୍ବରଣ କଲେ । ବକ୍ସିଙ୍କ ପରଲୋକ ଗମନ ପରେ ସର୍ତ୍ତ ଅନୁଯାୟୀ ବ୍ରିଟିଶ ସରକାର ପ୍ରଦାନ କରୁଥିବା ଭରଣ ପୋଷଣ ପେନ୍‌ସନ୍ ବନ୍ଦ କରି ଦିଆଯାଇଥିଲା ।

---

ଡି/୨୮, ଏରୋଡ୍ରୋମ କଲୋନୀ,
ୟୁନିଟ୍-୪, ଭୁବନେଶ୍ୱର ।

# ଶବ୍ଦ ପ୍ରଦୂଷଣ

* ଶ୍ରୀ ରାମଚନ୍ଦ୍ର ଦେଓ

ପ୍ରଶାନ୍ତ ନୈସର୍ଗିକ ପ୍ରକୃତି ଆଜି ଅଶାନ୍ତ ବିକ୍ଷୁବ୍ଧ । ପଞ୍ଚଭୂତରୁ ସୃଷ୍ଟ ପ୍ରାଣୀ ଜଗତ ଓ ଉଦ୍ଭିଦ ଜଗତ ପ୍ରକୃତି କୋଳରେ ବର୍ଦ୍ଧିତ । ପ୍ରକୃତିର ଅପାସୋରା ମନମୁଗ୍ଧକର ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ମାନବ ପାଉଥିଲା ଅପାର ଆନନ୍ଦ । ପ୍ରାଣୀ ଓ ଉଦ୍ଭିଦ ମଧ୍ୟରେ ରହିଛି ଅବିଚ୍ଛେଦ୍ୟ ସମ୍ପର୍କ । ଉଭୟେ ଉଭୟ ପ୍ରତି ନିର୍ଭରଶୀଳ । ଏକ ଅନ୍ୟଟିର ପରିପୂରକ । ପରିବେଶର ସମତା ରକ୍ଷା ପାଇଁ ପ୍ରକୃତି ପ୍ରାଣୀ ଓ ଉଦ୍ଭିଦର ସୃଷ୍ଟି କରିଛି । ଯଦି କୌଣସି କାରଣରୁ ଏହି ସମତା ରକ୍ଷାରେ ବାଧା ଉପୁଜେ, ତା'ହେଲେ ପରିବେଶ ସୁରକ୍ଷାରେ ସଂକଟ ସୃଷ୍ଟି ହୁଏ ।

ଆଦିମ ମାନବ ପ୍ରକୃତି କୋଳରେ ଖେଳିବୁଲୁଥିଲା । ସେ ତା'ର ଆବଶ୍ୟକୀୟ ଦ୍ରବ୍ୟମାନ ପ୍ରାକୃତିକ ପରିବେଶ ମଧ୍ୟରୁ ସଂଗ୍ରହ କରୁଥିଲା । ପ୍ରକୃତିସୃଷ୍ଟ ବୃକ୍ଷଲତା ଦ୍ୱାରା ସେ ନିଜର ବାସସ୍ଥାନ ନିର୍ମାଣ କରୁଥିଲା । ଲଜ୍ୟା ନିବାରଣ ପାଇଁ ସେ ବ୍ୟବହାର କରୁଥିଲା ବୃକ୍ଷର ବଲ୍‌କଲ । ଏଣୁ ସେ ବୃକ୍ଷକୁ ଦେବତା ରୂପେ ପୂଜା କରୁଥିଲା । ଖାଲି ସେତିକି ନୁହେଁ ପକ୍ଷୀର କୂଜନ, ବାତାହତ ପତ୍ରର ହିଲ୍ଲୋଳର ମଧୁର ଗୁଞ୍ଜରଣ ଦ୍ୱାରା ତା'ର ପରିବେଶ ସଙ୍ଗୀତମୟ ହୋଇ ଉଠୁଥିଲା । ମେଘର ସାମୟିକ ଗର୍ଜନ ଓ ବନ୍ୟ ପଶୁର କର୍କଶନାଦ ତା' ମନରେ ଭୀତି ସଞ୍ଚାର କରୁଥିଲା । ସେଥି ପାଇଁ ସେ ବିଚଳିତ ହୋଇ ଉଠୁଥିଲା ଓ ନିରାକରଣ ପାଇଁ ଇନ୍ଦ୍ରଦେବ ତଥା ବନଦେବୀଙ୍କୁ ପୂଜା କରୁଥିଲା । ସରଳ ମନରେ ସେ ଭାବି ନେଇଥିଲା ଯେ ଏହି ଦେବଦେବୀଙ୍କୁ ପୂଜାମାଧ୍ୟମରେ ସନ୍ତୁଷ୍ଟ କଲେ ଆଉ ଭୟର କାରଣ ରହିବ ନାହିଁ ।

କ୍ରମେ ମଣିଷ ସାଧାରଣରୁ ଅସାଧାରଣ ହେବାକୁ ଲାଗିଲା । ସେ ଆଦିମ ମାନବପରି ସ୍ୱଳ୍ପରେ ସନ୍ତୁଷ୍ଟ ହୋଇ ପାରିଲା ନାହିଁ । ନିଜର ଦୈନନ୍ଦିନ ସୁବିଧା ମେଣ୍ଟାଇବା ପାଇଁ ସେ ନୂଆ ନୂଆ ଜିନିଷର ଉଦ୍ଭାବନ କଲା । ନିଜର ଆମୋଦ ପାଇଁ ନିଷ୍ଠୁର ଭାବେ ପଶୁ ପକ୍ଷୀଙ୍କୁ ହତ୍ୟା କଲା । ପ୍ରକୃତି ବିରୁଦ୍ଧରେ ମାନବ ଚଳାଇଲା ତା'ର ଦୁର୍ବାର ଜୟ ଯାତ୍ରା । ଫଳରେ ତା'ର ବିଜୟହିଁ ପରାଜୟର କାରଣ ହେଲା । ସେ ନିଜର ମୃତ୍ୟୁ ଘଣ୍ଟି ନିଜେ ବଜାଇଲା ।

ପୃଥିବୀର ଜନସଂଖ୍ୟା କ୍ଷିପ୍ରଗତିରେ ବୃଦ୍ଧି ପାଇବାରେ ଲାଗିଛି । ଘଣ୍ଟାର ପ୍ରତିଟି ଟିକ୍ ଟିକ୍ ଶବ୍ଦର ବ୍ୟବଧାନରେ ପୃଥିବୀ ପୃଷ୍ଠରେ ଏକ ଶିଶୁସନ୍ତାନର ଆବିର୍ଭାବ ଘଟୁଛି । ପରିସଂଖ୍ୟାନରୁ ଜଣାଯାଏ ପ୍ରାୟ ପ୍ରତି ୩୫ ବର୍ଷରେ ପୃଥିବୀର ଲୋକସଂଖ୍ୟା ଦୁଇଗୁଣ ହୋଇ ଯାଉଛି, ଏବଂ ଦଶବର୍ଷରୁ ଊଣା ସମୟ ମଧ୍ୟରେ ଲୋକ ସଂଖ୍ୟା ଏକ ବିଲିୟନ ଅଧିକ ହେଉଛି । ଲୋକ ବଢ଼ିଲେ ସମସ୍ୟା ବଢ଼େ । ମାତ୍ରାଧିକ ଲୋକଙ୍କ ଉଦର ପୂରଣ ପାଇଁ ଖାଦ୍ୟର ଆବଶ୍ୟକତା ରହିଛି । ଖାଦ୍ୟ ଉତ୍ପାଦନ ପାଇଁ କୃଷିଜମି ନିତାନ୍ତ ଦରକାର । କୃଷିଜମିର ବୃଦ୍ଧି ପାଇଁ ମଣିଷ ନିର୍ଦ୍ଦୟ ଭାବେ ଜଙ୍ଗଲ ନଷ୍ଟ କରୁଛି, ଫଳରେ ପରିବେଶର ଭାରସାମ୍ୟ ନଷ୍ଟ ହେଉଛି ।

ସୂର୍ଯ୍ୟ ସକଳ ଶକ୍ତିର ଆଧାର । ମାତ୍ର ଏହାର ପାରପୋଲ (Ultra Violet) ବିକିରଣ ଦ୍ୱାରା ଜୀବଜଗତ ତଥା ଉଦ୍ଭିଦ ଜଗତ ସମ୍ପୂର୍ଣ୍ଣ ରୂପେ ବିନଷ୍ଟ ହୋଇଯିବାର ସମ୍ଭାବନା ରହିଛି । ମାତ୍ର ପ୍ରକୃତି ତା'ର ସୃଷ୍ଟିକୁ ରକ୍ଷା କରିବା ପାଇଁ ଓଜୋନସ୍ତର ସୃଷ୍ଟିକରିଛି । ଏହି ସ୍ତରକୁ ଭେଦକରି ପୃଥିବୀ ପୃଷ୍ଠକୁ ସୂର୍ଯ୍ୟଙ୍କର ଶଂସିତ ତେଜସ୍କ୍ରିୟ ରଶ୍ମି ଆସିପାରେ ନାହିଁ, କିନ୍ତୁ ଓଜୋନ ସ୍ତରର ଅବକ୍ଷୟ ପାଇଁ ଏଇ ମଣିଷ ଦାୟୀ । ଜଣାଯାଇଛି C.F.C. (Chloro fluoro carbon) ଯୋଗୁଁ ଓଜୋନସ୍ତର କ୍ରମେ ଅବକ୍ଷୟିତ ହେଉଛି । ଯେଉଁ ଅଲୌକିକ ଉଦ୍ଭାବନ ଦ୍ୱାରା ପ୍ରଶୀତକ, ବାୟୁତାପ ନିୟନ୍ତ୍ରଣ, ସଫେଦକାରକ ତଥା ପ୍ଲାଷ୍ଟିକ ବସ୍ତୁମାନ ଉତ୍ପାଦିତ ହେବା ସମ୍ଭବ ହେଲା, ବ୍ୟବହାରରେ ପରିତ୍ୟକ୍ତ ବସ୍ତୁରୁ C.F.C. ନର୍ଗତ ହୋଇ ଓଜୋନ ସ୍ତରର ଅଣୁମାନଙ୍କୁ ବିନଷ୍ଟ କରିବାରେ ଲାଗିଲା । ନିଜର ବିଳାସ ସାମଗ୍ରୀ ପ୍ରସ୍ତୁତି ପାଇଁ ଯେଉଁ C.F.C. ମଣିଷ ପ୍ରସ୍ତୁତ କରୁଛି ଶେଷରେ ସେଇ C.F.C. ମାନବ ଜାତିର ଧ୍ୱଂସର କାରଣ ହେଉଛି ।

ନିଜର ଅର୍ଥନୈତିକ ପ୍ରଗତି ପାଇଁ ମାନବଜାତି ଆଜି ଅହରହ ବ୍ୟସ୍ତ । ମାତ୍ର ଏହି ପ୍ରଗତି ହିଁ ତା'ର ଦୁର୍ଗତିର କାରଣ ହେଉଛି । କଳକାରଖାନା ବୃଦ୍ଧି ଫଳରେ ତା'ର ସମୃଦ୍ଧି ଘଟୁଛି ସତ, ହେଲେ ଏହି ବୃଦ୍ଧି ଆମ ବାୟୁମଣ୍ଡଳକୁ ପ୍ରଦୂଷିତ କରିବାରେ ଲାଗିଛି । ଜଳବାୟୁ ପ୍ରଦୂଷିତ ହେବା ଫଳରେ ମାନବ ଜୀବନ କ୍ରମେ ସଂକଟମୟ ହୋଇ ଉଠୁଛି ।

ଜଳବାୟୁ ପ୍ରଦୂଷିତ ହେବା ଫଳରେ ଆମର ପରିବେଶ ଯେଉଁଭଳି ନଷ୍ଟହେଉଛି, ଶବ୍ଦ ପ୍ରଦୂଷଣ ଦ୍ୱାରା ତତୋଽଧିକ କ୍ଷତି ସାଧିତ

ହୋଇଛି । ଶବ୍ଦ ପ୍ରଦୂଷଣ ପ୍ରକାରାନ୍ତରରେ ଆମର ଅଶେଷ କ୍ଷତି କରୁଛି । ମଧୁର ସ୍ୱର ସମସ୍ତଙ୍କୁ ବିମୋହିତ କରେ । ସେଥିପାଇଁ ମଣିଷ ସଙ୍ଗୀତ ପ୍ରିୟ । ମଣିଷ କାହିଁକି ପଶୁ ପକ୍ଷୀ ମଧ୍ୟ ସଙ୍ଗୀତରେ ଆନନ୍ଦରେ ମୁଗ୍ଧ ହୁଅନ୍ତି । ସାପୁଆ କେଳାର ସଙ୍ଗୀତ ଲହରରେ ମୁଗ୍ଧ ହୁଏ ବିଷଧର ସର୍ପ । ନିଷାଦର ସଙ୍ଗୀତ ମୂର୍ଚ୍ଛନା ଏଡ଼ି ନ ପାରି ହରିଣ ଧରାଦିଏ । ଏପରିକି ବୃକ୍ଷ ଲତା ମଧ୍ୟ ସଙ୍ଗୀତର ମଧୁରତାରେ ବିମୁଗ୍ଧ ହୁଏ । ମାତ୍ର ଏଇ ସ୍ୱର ଯେତେବେଳେ କର୍ଣ୍ଣ କର୍କଶ ହୋଇଉଠେ, ସେତେବେଳେ ଆମେ ଅତିଷ୍ଠ ହୋଇ ଉଠୁଁ, ବ୍ୟତିବ୍ୟସ୍ତ ହୋଇ ଏହି କର୍କଶ ଧ୍ୱନିଠୁ ଦୂରେଇ ଯିବାକୁ ଚେଷ୍ଟା କରୁ ।

ମାନବର ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ପରି କର୍ଣ୍ଣ ଏକ ଅତି ଆବଶ୍ୟକ ଅଙ୍ଗ । ସମସ୍ତ ପ୍ରକାର ଶବ୍ଦ ଶ୍ରବଣରେ ଆମର ଏହି କର୍ଣ୍ଣ ସାହାଯ୍ୟ କରୁଥିବାରୁ ଏହାର ଅନ୍ୟାନ୍ୟ ଶ୍ରବଣେନ୍ଦ୍ରିୟ । କିନ୍ତୁ ଏହି କର୍ଣ୍ଣ ଏକ ନିର୍ଦ୍ଦିଷ୍ଟମାତ୍ର । ଶବ୍ଦ ଗ୍ରହଣ ପାଇଁ ଉଦ୍ଦିଷ୍ଟ । ତଦୂର୍ଦ୍ଧ୍ୱ ହେଲେ ଏହାର କୁପ୍ରଭାବ ଆମ ଶରୀର ଉପରେ ପଡ଼େ । ବିଭିନ୍ନ ବସ୍ତୁର ଓଜନ ବା ମାପ ପାଇଁ ବିଭିନ୍ନ ପ୍ରକାର ଏକକର ବ୍ୟବହାର ହୋଇଥାଏ । ସେହିପରି ଶବ୍ଦକୁ ମାପିବା ପାଇଁ ବୈଜ୍ଞାନିକମାନେ ଯେଉଁ ଏକକର ବ୍ୟବହାର କରନ୍ତି, ତାହାକୁ ଡ଼େସିବେଲ୍ (Decibel) କୁହାଯାଏ । ଆମର କର୍ଣ୍ଣ ୬୦ ଡ଼େସିବେଲ ପର୍ଯ୍ୟନ୍ତ ସାଧାରଣ ଭାବେ ଗ୍ରହଣ କରିପାରେ ୬୦ ଡ଼େସିବେଲରୁ ଶବ୍ଦ ଊର୍ଦ୍ଧ୍ୱ ହେଲେ ଏହା ଆମ କର୍ଣ୍ଣ ପଟ୍ଟହ ତଥା ମସ୍ତିଷ୍କରେ ଆଘାତ ସୃଷ୍ଟିକରେ । ଯଦି ଶବ୍ଦ ପ୍ରବାହ ଅଶୀ ଡ଼େସିବେଲ ହେବ, ତା'ହେଲେ ଆମେ ହୁଏତ ଅସ୍ଥାୟୀ ଭାବେ ଆମର ଶ୍ରବଣଶକ୍ତି ହରାଇବୁ । ପୁନଶ୍ଚ ଯଦି ଏହି ଶବ୍ଦ ପ୍ରବାହ ଏକଶତ ଡ଼େସିବେଲ ହେବ, ଓ ଦୀର୍ଘ ସମୟଧରି ପ୍ରବାହିତ ହେବ, ତା'ହେଲେ ଆମେ ସମ୍ପୂର୍ଣ୍ଣ ଭାବେ ଆମର ଶ୍ରବଣଶକ୍ତି ହରାଇବୁ ଓ କାଲ ସାଜିଯିବୁ । ଶବ୍ଦର ତୀବ୍ରତା କେତେ ସମୟରେ ଶ୍ରବଣେନ୍ଦ୍ରିୟର ଯେଉଁକ୍ଷତି ଘଟାଏ, ତାହାକୁ ଏକଷ୍ଟିକ ଟ୍ରମା Acoustic Trauma) କହନ୍ତି । ପୁନଶ୍ଚ ଶବ୍ଦର ତୀବ୍ରତା ଓ ଦୀର୍ଘସମୟଧରି ପ୍ରବାହହେଲେ ମନୁଷ୍ୟକୁ ହତବୁଦ୍ଧି କରିଦିଏ । ଏହାଛଡ଼ା ଶରୀରର ଅନ୍ୟାନ୍ୟ ଅଂଶରେ ଏହାର କୁପ୍ରଭାବ ପଡ଼ି ରକ୍ତଚାପ, ହୃଦରୋଗ ଇତ୍ୟାଦି ମାରାତ୍ମକ ରୋଗ ସୃଷ୍ଟିକରେ । କେତେକ ସମୟରେ ଦେଖାଯାଇଛି ନିର୍ଦ୍ଦିଷ୍ଟ ଶବ୍ଦ ପ୍ରବାହ ତା'ର ନିର୍ଦ୍ଦିଷ୍ଟତାକୁ ଅତିକ୍ରମ କରି ଅଧିକ ହେଲେ ଅବସାଦ, ଅମନଯୋଗିତା ଇତ୍ୟାଦି ଉପସର୍ଗ ଦେଖାଦିଏ ।

ଅବସାଦ, ଅମନଯୋଗିତା ମନୁଷ୍ୟକୁ ତା'ର କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟିକରେ । ବିଶେଷତଃ ଶିଳ୍ପାଞ୍ଚଳର ଶ୍ରମିକମାନେ କଳ କାରଖାନାର ଉତ୍କଟ ଶବ୍ଦ ଶିକାର ହୋଇଥା'ନ୍ତି । କେତେକ ସମୟରେ ସେମାନେ ଶ୍ରବଣଶକ୍ତି ହରାଇଥା'ନ୍ତି ନଚେତ୍ ଅବସାଦ, ଅମନଯୋଗିତା ଇତ୍ୟାଦି ଉପସର୍ଗରେ ଆକ୍ରାନ୍ତ ହୋଇଥା'ନ୍ତି । ଫଳରେ ଶ୍ରମିକର ଦକ୍ଷତା ହ୍ରାସ ପାଏ ଓ ଉତ୍ପାଦନ ବାଧାପ୍ରାପ୍ତ ହୁଏ । ଖାଲି ଏତିକି ନୁହେଁ ଅମନଯୋଗିତା ଯୋଗୁଁ କଳ କାରଖାନାରେ ଦୁର୍ଘଟଣା ବୃଦ୍ଧିପାଏ । ଜୀବିକାର୍ଜନ ପାଇଁ ଯାଇ ଶ୍ରମିକ ତା'ର ବହୁମୂଲ୍ୟ ଜୀବନ ଶେଷରେ ହରାଏ ।

ମନୁଷ୍ୟ ଭୋଗବିଳାସ ପାଇଁ ବିଳାସପୂର୍ଣ୍ଣ ସାମଗ୍ରୀ ସୃଷ୍ଟି କରୁଛି ସତ, ହେଲେ ଏହି ବିଳାସପୂର୍ଣ୍ଣ ଦ୍ରବ୍ୟମାନ ତା'ର ଶାନ୍ତ କମନୀୟ ପରିବେଶକୁ ପ୍ରକାରାନ୍ତରରେ ପ୍ରଦୂଷିତ କରୁଛି ଓ ତା'ର ସୁଖମୟ ଜୀବନକୁ କାଳର କୋଳାଗ୍ରତ କରାଇବାରେ ସହାୟକ ହେଉଛି । ଉଷ୍ଣତାରୁ ରକ୍ଷା ପାଇବା ପାଇଁ ମନୁଷ୍ୟ ସୃଷ୍ଟି କରୁଛି ବିଜୁଳି ପଙ୍ଖା, ପ୍ରଶିତକ ଇତ୍ୟାଦି । ମାତ୍ର ଏଗୁଡ଼ିକରୁ ନିର୍ଗତ ଶବ୍ଦ ଷାଠିଏ ଡ଼େସିବେଲରୁ ଊର୍ଦ୍ଧ୍ୱ ହେଉଥିବାରୁ ପରିବେଶ ପ୍ରଦୂଷିତ ହେଉଛି । ଆମର ଆରାମଦାୟକ ସମସ୍ତ ସରଞ୍ଜାମ ବିଜୁଳି ଶକ୍ତି ଦ୍ୱାରା ଚାଳିତ । ମାତ୍ର ଆଜିକାଲି ବିଜୁଳି ବିଭ୍ରାଟ ନିତ୍ୟ ନୈମିତ୍ତିକ ଘଟଣା ହୋଇ ଗଲାଣି । ଏଣୁ ବିଜୁଳି କାଟ ସମୟରେ ବିଜୁଳି ଶକ୍ତି ଦ୍ୱାରା ଚାଳିତ ଯନ୍ତ୍ରପାତି ଚାଳନା ପାଇଁ ଜେନେରେଟର୍ ବ୍ୟବହାର କରାଯାଉଛି । କିନ୍ତୁ ଏହି ଜେନେରେଟର୍ ଚାଳନା ଦ୍ୱାରା ଯେଉଁ ଶବ୍ଦ ସୃଷ୍ଟିହେଉଛି, ତାହା ପରିବେଶକୁ ନଷ୍ଟ କରୁଛି ।

ରାତିହିଁ ମଣିଷର ବିଶ୍ରାମ ସମୟ । ଦିନତମାମ ହାଡ଼ ଭଙ୍ଗା ପରିଶ୍ରମ ପରେ ମଣିଷ ଖୋଜେ ବିଶ୍ରାମ । ସୁଖନିଦ୍ରାରେ ପୂର୍ଣ୍ଣାଙ୍ଗ ବିଶ୍ରାମ ମିଳି ଥାଏ । ଯଦି ଏହି ନିଦ୍ରା ଶବ୍ଦର ଉତ୍କଟତା ପାଇଁ ବାଧା ପ୍ରାପ୍ତ ହୁଏ, ତା'ହେଲେ ଜୀବନ ନିଶ୍ଚିତ ଭାବେ ସଙ୍କଟର ସମ୍ମୁଖୀନ ହେବ । ପରିବେଶ ବିଜ୍ଞାନୀମାନେ ସ୍ଥିର କରିଛନ୍ତି ଯେ ୫୦ ଡ଼େସିବେଲ ଶବ୍ଦ ଲହର ଦ୍ୱାରା ନିଦ୍ରାରେ କୌଣସି ବାଧା ସୃଷ୍ଟି ହୁଏ ନାହିଁ । ଶବ୍ଦର ଲହର ତଦୂର୍ଦ୍ଧ୍ୱ ହେଲେ ନିଦ୍ରାରେ ବ୍ୟାହତ ହୁଏ ଓ ନାନା ପ୍ରକାର ଶାରୀରିକ ଉପସର୍ଗ ଦେଖା ଯାଏ । ପୂଜା ପାର୍ବଣ, ବିବାହ ବ୍ରତରେ ମାତ୍ରାଧିକ ଶବ୍ଦଲହର ଦ୍ୱାରା ସଙ୍ଗୀତ ପରିବେଷଣ କରିବା ଆମର ଏକ ପ୍ରକାର ବଦ୍‌ଅଭ୍ୟାସ ହୋଇଗଲାଣି । ହାସପାତାଳ, ସ୍କୁଲ, କଲେଜ ଅଞ୍ଚଳ ନିଃଶବ୍ଦ ଅଞ୍ଚଳ ବୋଲି ପରିଗଣିତ ହୁଏ । ରୋଗୀ ଯନ୍ତ୍ରଣାରେ ଛଟପଟ ହେଉଥିବା ବେଳେ ତା'ପାଇଁ ଏକ ସୁସ୍ଥ ପରିବେଶ ଲୋଡ଼ା । ସେହିପରି ବିଦ୍ୟାର୍ଥୀମାନଙ୍କ ପାଇଁ ମଧ୍ୟ ଏକ ଶାନ୍ତ ପରିବେଶର ଆବଶ୍ୟକତା ରହିଛି । ମାତ୍ର ଏସବୁ ସ୍ଥାନ ମଧ୍ୟ ଶବ୍ଦ ପ୍ରଦୂଷଣରୁ ମୁକ୍ତ ନୁହେଁ । ଗବେଷଣାରୁ ଜଣା ଯାଉଛି ଯେ, ଷାଠିଏ ଡ଼େସିବେଲ ଶବ୍ଦ ଲହରୀ ଆମ କର୍ଣ୍ଣ ସୁସ୍ଥ ଭାବରେ ଗ୍ରହଣ କରେ । କିନ୍ତୁ ଶବ୍ଦ ଲହର ସୀମାକୁ ଅତିକ୍ରମ କରି ହାସପାତାଳ ଅଞ୍ଚଳରେ ଶବ୍ଦଲହରର କ୍ଷିପ୍ରତା ୮୪ରୁ ୧୦୦ ଡେସିବେଲ୍ । ଶିକ୍ଷାନୁଷ୍ଠାନ ଅଞ୍ଚଳରେ ୭୩ରୁ ୯୨ ଡେସିବେଲ୍, ଜନବସତି ଅଞ୍ଚଳରେ ୬୪ରୁ ୯୦ ଡେସିବେଲ୍ । ଏପରି କି ରାତିରେ ମଧ୍ୟ ଏହି ଶବ୍ଦଲହରର ଉତ୍କଟତା ହ୍ରାସ ପାଉ ନାହିଁ । ସାଧାରଣତଃ ରାତିରେ ଶବ୍ଦ ଲହରର ୫୦ ଡେସିବେଲ୍ ହେବା ଆବଶ୍ୟକ । ମାତ୍ର ଏହି ଶବ୍ଦ ଲହରର ୬୫ରୁ ୭୦ ଡେସିବେଲ୍ ହେଉଛି । ଫଳରେ ଆମ ପରିବେଶ ପ୍ରଦୂଷିତ ହେଉଛି ।

ପୃଥିବୀର ବଡ଼ ବଡ଼ ସହରମାନଙ୍କ ଶବ୍ଦ ଲହର ସାରଣୀରୁ ଜଣାଯାଇଛି ଯେ, ନିଉୟର୍କ ସହରରେ ଶବ୍ଦ ଲହର ଏକଶହରୁ

ଏକଶହ କୋଡ଼ିଏ ଡେସିବେଲ୍ । ୱାସିଙ୍ଗଟନ୍‌ରେ ୯୦ରୁ ୧୦୦ ଡେସିବେଲ୍ । ପ୍ୟାରିସ୍‌ରେ ୮୦ରୁ ୭୨୦ ଡେସିବେଲ୍ · ଲଣ୍ଡନ ୧୦୦ରୁ ୭୨୦ଡେସିବେଲ୍, ନୂଆଦିଲ୍ଲୀ ୧୦୦ରୁ ୭୨୦ ଡେସିବେଲ୍, ବମ୍ବେ ୧୦୦ରୁ ୧୮୦ ଡେସିବେଲ୍ । କଲିକତା ୯୦ରୁ ୧୭୦ ଡେସିବେଲ୍ ଓ ଓଡ଼ିଶାର ରାଉରକେଲା ୬୦ରୁ ୧୧୦ ଡେସିବେଲ୍ ।

ମଣିଷ ନିଜର ସମୃଦ୍ଧି ପାଇଁ କଳକାରଖାନା ଯାନବାହନ ସୃଷ୍ଟି କରୁଛି ସତ, ହେଲେ ଏ ସବୁ ଦ୍ୱାରା ପରିବେଶ ଯେ ପ୍ରଦୂଷିତ ହେଉଛି ଓ ପରିଶେଷରେ ସମୃଦ୍ଧି ତା'ର ବିପତ୍ତିର କାରଣ ହେଉଛି, କଥା ଭୁଲିଯିବା ଉଚିତ ନୁହେଁ ।

(ଆକାଶବାଣୀ, ବାରିପଦା ସୌଜନ୍ୟରୁ) ।

ପ୍ରଧାନ ଶିକ୍ଷକ, ଯୁଗଳ ହାଇସ୍କୁଲ,
ଯୁଗଳ, ମୟୂରଭଞ୍ଜ ।



ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ ବିଷୟରେ ବସିଥିବା ବୈଠକରେ ଉଦ୍‌ବୋଧନ ଦେଉଛନ୍ତି ।

# ସ୍ୱାଧୀନତାର ପୃଷ୍ଠଭୂମି

✱ ଗନ୍ଧର୍ବ ସେନ ରଣା

ଭାରତରେ ନବଜାଗରଣର ଆହ୍ୱାନ ତଥା ସଂଗ୍ରାମ ସଦାସର୍ବଦା ଲାଗିରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆର୍ଯ୍ୟ ସମାଜ, ବ୍ରହ୍ମ ସମାଜ ପ୍ରତିଷ୍ଠା ପାଇଁ ଯୁଗେ ଯୁଗେ ଯେପରି ଭାବରେ ସଂଗ୍ରାମ ଜାରି ରହିଥାଏ ଓ କାଳାନ୍ତରରେ ମହାପୁରୁଷମାନେ ଯେପରି ଅଂଶ ଗ୍ରହଣ କରନ୍ତି, ଠିକ୍ ସେହିପରି ରାଜନୀତି କ୍ଷେତ୍ରରେ ଦେଖାଦିଏ ।

ଆମେ ପରାଧୀନ ଥିବା ଅବସ୍ଥାରେ, ଦେଶକୁ ସ୍ୱାଧୀନ ଆଣି, ଏକ ରାଜନୀତି ଦଳ ଗଠନ କରିବା ପାଇଁ ମଧ୍ୟ ଦେଶର ଅନେକ ମହାପୁରୁଷ ନିଜନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ ଭାରତ ମାତାର ସେବାରେ । ଇତିହାସ ପୃଷ୍ଠା କେବଳ ଏଇ ସବୁ ମୂକ ସାକ୍ଷୀ ।

ତେବେ ଖ୍ରୀ:୧୮୭୬ ମସିହାର ଘଟଣା — ଏହାର ଶୁଭାରମ୍ଭ କହିଲେ ଭୁଲ୍ ହେବନି । ସେତେବେଳେ ଇଂରେଜ ସରକାର ଆଇ: ସି: ଏସ୍: ପରୀକ୍ଷାରେ ଅଂଶ ଗ୍ରହଣ କରିବା ପାଇଁ ଭାରତୀୟମାନଙ୍କ ନିମନ୍ତେ ବୟସର ସୀମାକୁ ଏକୋଇଶରୁ ଊଣେଇଶକୁ କମାଇ ଦେଇଥିଲେ । ଏହା ବିରୁଦ୍ଧରେ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲେ ବଙ୍ଗାଳୀ ନବ ଯୁବକ ସୁରେନ୍ଦ୍ରନାଥ ବାନାର୍ଜୀ ଯଦିଓ ସେ ଆଇ: ସି: ଏସ୍: ପାଇସାରିଥିବା ପରେ ଇଂରେଜମାନଙ୍କ ଅଧୀନରେ ଚାକିରି ନକରିବାକୁ ମନସ୍ଥ କରି ଦେଶ ସେବାରେ ମନପ୍ରାଣ ଢାଳି ଦେଇଥିଲେ । ସେଇ ବର୍ଷ ହିଁ ସେ କେତେ ଜଣଙ୍କୁ ନେଇ ଭାରତୀୟ ଆସୋସିଏସନ୍ ଗଠନ କରିଥିଲେ ଓ ତାଂର ସାତ ବର୍ଷ ପରେ ଭାରତୀୟ ଜାତୀୟ ସମ୍ମିଳନୀର ସ୍ଥାପନା କରିଥିଲେ ।

ଖ୍ରୀ:୧୮୮୫ ମସିହାରେ ଆଇ: ସି: ଏସ୍: ଚାକିରିରୁ ଅବସର ନେବା ପରେ ଜନୈକ ଇଂରେଜ ଅଫିସର ତତ୍‌କାଳୀନ ଭାରତର ଭାଇସ୍‌ରାୟ ଲର୍ଡ଼ ଡଫ୍‌ରିନ୍‌ଙ୍କ ସହ ସକ୍ରିୟ ପରାମର୍ଶ ନେଇ ଭାରତୀୟ ଜାତୀୟ କଂଗ୍ରେସର ସ୍ଥାପନା କରିଥିଲେ । ଆଉ ସେଇ ବର୍ଷ ହିଁ ଏହାର ପ୍ରଥମ ଅଧିବେଶନ ଭାରତର ହିନ୍ଦୁ ଓ ମୁସଲମାନ ପ୍ରତିନିଧିଙ୍କ ଗହଣରେ ବମ୍ବେଠାରେ ବସିଥିଲା । ପରେ ପରେ କଲିକତା ଓ ମାଡ୍ରାସ୍‌ଠାରେ ଅଧିବେଶନ ବସିଲା । ପ୍ରଥମେ ପ୍ରଥମେ ଦେଶର ଅଫିସରଗଣ ଏଇ ଅଧିବେଶନରେ ଉପସ୍ଥିତ ହେଉଥିଲେ । ଆଉ ସରକାରଙ୍କର ନୀତି, ଆଦର୍ଶକୁ ଆଲୋଚନା କରିବା ସହିତ ଅଧିବେଶନରେ ସରକାରଙ୍କ ପ୍ରତି ପ୍ରସ୍ତାବ ଉପରେ ଗଭୀର ଭାବରେ ଆଲୋଚନା କରାଯାଉଥିଲା । କଂଗ୍ରେସର ଏପରି ଶିଥିଳ କାର୍ଯ୍ୟକ୍ରମରେ ଇଂଲଣ୍ଡରେ ଥିବା ଉଦାରବାଦୀ ରାଜନୈତିକ ନେତା ତଥା ଭାରତର କର୍ମିସ୍ୱରୀଗଣ ମୋଟେ ସନ୍ତୁଷ୍ଟ ନଥିଲେ । ଫଳରେ ସେ ସମୟରେ ମହାରାଷ୍ଟ୍ରର ବାଳ ଗଙ୍ଗାଧର ତିଳକ ଓ ବଙ୍ଗଳାର ମନିଷୀ ଅରବିନ୍ଦ ଘୋଷ ସାମାନ୍ୟ ପରିବର୍ତ୍ତନ ଆଣିବା ପାଇଁ ଦୃଢ଼ ସଂକଳ୍ପ ନେଇଥିଲେ ।

ଖ୍ରୀ:୧୯୦୫ ମସିହାରେ ତିଳକଙ୍କୁ ରାଷ୍ଟ୍ରୀୟ ନେତା ତଥା ବିପିନ ଚନ୍ଦ୍ର ପାଲ୍‌ଙ୍କୁ ବନ୍ଦେ ମାତରଂର ସମ୍ପାଦନା କାର୍ଯ୍ୟ ସମର୍ପଣ କରାଯାଇଥିଲା । ଆଉ ବି ସେଇ ବର୍ଷ ରାଷ୍ଟ୍ରୀୟ ଆନ୍ଦୋଳନର ଗତିବିଧିକୁ ତୀବ୍ରତର କରିବା ପାଇଁ ଅନ୍ୟ ଏକ ବାମପନ୍ଥୀ ଦଳ ସ୍ଥାପନା କରାଯାଇଥିଲା । ଖ୍ରୀ:୧୯୦୬ ମସିହାରେ ଏଇ ନୂଆ ଦଳ ସ୍ୱରାଜ୍ୟ ସ୍ଥାପନା, ବିଦେଶୀ ଜିନିଷ ବର୍ଜନ ତଥା ରାଷ୍ଟ୍ରୀୟ ଶିକ୍ଷା ଉପରେ ଜୋର ଦେବା ସହିତ ସ୍ୱୀକୃତି ପ୍ରଦାନ କରିଥିଲେ । କିନ୍ତୁ ଉଦାରବାଦୀ ତଥା ଉଗ୍ରବାଦୀମାନେ ଏଥି ସହ ସହମତ ନହେବାରୁ ୧୯୦୭ ମସିହାରେ ଅଧିବେଶନରେ ପରସ୍ପର ଭିତରେ ମତଭେଦ ହୋଇଥିଲା । ମତଭେଦର ଆକାର ଏପରି ଧାରଣ କରିଥିଲା ଯେ, ଇଂରେଜ ପୁଲିସ୍ ହସ୍ତକ୍ଷେପ କରିଥିଲେ ଏବଂ ନେତାମାନଙ୍କୁ ମାଣ୍ଡଲେସ୍ଥିତ ଜେଲ୍‌ରେ ଦୀର୍ଘଦିନ ଧରି ରଖିଥିଲେ ।

ଜାତୀୟ ନେତାମାନଙ୍କର ଏତାଦୃଶ କାର୍ଯ୍ୟକଳାପକୁ ଦେଖି ଭାରତରେ ଥିବା ଇଂରେଜ ଅଫିସରମାନେ ରାଷ୍ଟ୍ରୀୟ ଆନ୍ଦୋଳନକୁ ଦୁର୍ବଳ କରିଦେବା ପାଇଁ ଷଡ଼ଯନ୍ତ୍ର ଆରମ୍ଭ କରିବାରେ ଲାଗିଲେ । ହିନ୍ଦୁ ମୁସଲମାନମାନଙ୍କ ଭିତରେ ଫାଟ ସୃଷ୍ଟି କରିବା ପାଇଁ ଆଲିଗଡ଼ କଲେଜର ତତ୍‌କାଳୀନ ପ୍ରିନ୍‌ସପାଲ୍ ବେକ୍ ବିଶେଷ ଭୂମିକା ଗ୍ରହଣ କରିଥିଲେ । ସେ ସମୟରେ ମୁସଲମାନ ନେତା ସାର୍ ସୟେଦ୍ ଅହମ୍ମଦ୍ ଖାଁଙ୍କୁ ରାଷ୍ଟ୍ରୀୟ କଂଗ୍ରେସରୁ ଦୂରେଇ ଯାଇ ଇଂରେଜମାନଙ୍କଠାରେ ଶରଣ ପଶିବା ପାଇଁ ନାନା ପ୍ରକାର ପ୍ରୋତ୍ସାହିତ କରିଥିଲେ । ଫଳରେ ସାର୍ ସୟେଦ୍ ଅହମ୍ମଦ୍ ଖାଁ ଏକ ଭିନ୍ନ ନିର୍ବାଚନ ପ୍ରଣାଳୀରେ ଦାବୀ ଉପସ୍ଥାପନ କରିଥିଲେ । ଇଂରେଜମାନଙ୍କ ପରାମର୍ଶ ତଥା ପ୍ରେରଣା ପାଇଁ ୧୯୦୬ ମସିହାରେ ଢାକାର ନବାବ୍ ସଲିମ୍ ଉଲ୍ଲା ଖାଁ ମୁସଲିମ୍ ଲିଗ୍‌ର ସ୍ଥାପନା କରି ମୁସଲମାନଙ୍କର ଏକ ପୃଥକ୍ ରାଜନୈତିକ ସଂସ୍ଥା

ଗଠନ କରିଦେଇଥିଲେ । ଇଂରେଜମାନଙ୍କର ଘନଘନ ପ୍ରେରଣା ପାଇ ମୁସଲିମ୍ ଲିଗ୍ ବଙ୍ଗ ବିଭାଜନର ସ୍ୱର ଉଠାଇବା ସହିତ ଜାତୀୟ କଂଗ୍ରେସର ସମସ୍ତ ଆହ୍ୱାନକୁ ବିରୋଧ କରିଥିଲେ । ଇଂରେଜମାନେ ନିଜର ଘୃଣିତ ଷଡ଼ଯନ୍ତ୍ର ତଥା ନିର୍ଦ୍ଦନୀୟ ନୀତିର ସଫଳ ହୋଇଥିଲେ । ସଙ୍ଗେ ସଙ୍ଗେ ଭାଇସ୍‌ରାୟ ଲର୍ଡ଼ ମିଣ୍ଟୋ ସ୍ୱତନ୍ତ୍ର ମୁସଲିମ୍ ଲିଗ୍‌ର ଏକ ପ୍ରତିନିଧିମଣ୍ଡଳ ଗଠନ ପାଇଁ ଆମନ୍ତ୍ରଣ କରିଥିଲେ । ଆଉ ବି ପ୍ରସ୍ତାବ ପାଇବା ସଙ୍ଗେ ସଙ୍ଗେ ସ୍ୱୀକୃତି ପ୍ରଦାନ କରିଦେଇଥିଲେ । ଅପର ପକ୍ଷରେ କଂଗ୍ରେସର ସମସ୍ତ ଦାବୀକୁ ଇଂରେଜ ସରକାର ପ୍ରତ୍ୟାଖ୍ୟାନ କରି ଦେଉଥାଏ ।

ଇଂରେଜମାନଙ୍କ କୁଟିଳ ନୀତି ବ୍ୟତୀତ ମୁସଲିମ୍ ଲିଗ୍ କଂଗ୍ରେସର ରାଷ୍ଟ୍ରୀୟ ଭାବନାକୁ ଅଙ୍ଗୀକାର କରି ୧୯୧୩ ମସିହାରେ ଗୋଟିଏ ପ୍ରସ୍ତାବ ରଖିଲେ । ଇଂରେଜମାନଙ୍କ ଉପନିବେଶ ଅନୁସାରେ ରାଷ୍ଟ୍ରମଣ୍ଡଳ ଅନ୍ତର୍ଗତ ସ୍ୱାଧୀନତାର ଦାବୀ ଉପସ୍ଥାପନା କରିଥିଲେ । ସେଇ ଅନୁସାରେ ତିନି ବର୍ଷ ପରେ ମହାନ୍ ଐତିହାସିକ ଲକ୍ଷ୍ନୌ ଅଧିବେଶନରେ ଦୁଇ ପକ୍ଷର ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ଆଉ ସେଇ ୧୯୧୬ ମସିହାରେ, ସେଇ ଲକ୍ଷ୍ନୌଠାରେ କଂଗ୍ରେସର ଦୁଇ ବିରୋଧୀ ଦଳ ଭିତରେ ବୁଝାମଣା ହୋଇଯିବାରେ ତିଳକ ତଥା ଆନିବେସାନ୍ତ ହୋମରୁଲ୍ ଲିଗ୍‌ର ସ୍ଥାପନା କରିବା ସହିତ କଂଗ୍ରେସ–ଲିଗ୍ ଯୋଜନାର ସପକ୍ଷରେ ପ୍ରଚାର କରିବା ପାଇଁ ଦୁଇ ପକ୍ଷ ଏକଜିତ ହେବା ସଙ୍ଗେ ସଙ୍ଗେ ଦୃଢ଼ ସଂକଳ୍ପ ନେଇଥିଲେ ।

ଇଂରେଜମାନେ ଏପରି ପଦକ୍ଷେପ ଦେଖି ଆନିବେସାନ୍ତଙ୍କୁ ବନ୍ଦୀ କରିବା ପାଇଁ ଘୋଷଣା କରିବା ସହିତ ନୀତି ପ୍ରଣୟନ କରିଥିଲେ । ଆଉ ସଙ୍ଗେ ସଙ୍ଗେ ସେଇ ନୀତି ବିରୁଦ୍ଧରେ ତିଳକ ବିରୋଧ କରିବା ସହିତ ଆନ୍ଦୋଳନ କରିବାର ଧମକ ଦେଲେ । କଂଗ୍ରେସ ମଧ୍ୟ ତିଳକଙ୍କୁ ସମର୍ଥନ କରିଥିଲା । ଏପରି ଚେତାବନି ପାଇବା ପରେ ଇଂରେଜ ସରକାର ଥରହର ହେବା ସଙ୍ଗେ ସଙ୍ଗେ ସନ୍ ୧୯୧୭ ମସିହା ଅଗଷ୍ଟ ୨୦ ତାରିଖରେ ଭାରତ ମନ୍ତ୍ରୀ ଏଡ୍‌ୱିନ ମଣ୍ଟେଗୁ ପାର୍ଲିଆମେଣ୍ଟରେ ଘୋଷଣା କରିଥିଲେ — "ଭାରତକୁ ଆଂଶିକ ଶାସନ ଭାର ସ୍ୱାୟତ୍ତ ପ୍ରଶାସନ ମାଧ୍ୟମରେ ଦିଆଗଲା ଓ ଭାରତବାସୀଙ୍କୁ ଉତ୍ତରୋତ୍ତର ସହଯୋଗ ପ୍ରଦାନ କରିବାର ଆଶ୍ୱାସନା ମଧ୍ୟ ଦିଆଗଲା ।"

ରାଷ୍ଟ୍ରୀୟ କଂଗ୍ରେସ ଏହାକୁ ସ୍ୱୀକାର କରିନଥିଲା, ଫଳରେ ଇଂରେଜ ସରକାର ଭାରତ ମନ୍ତ୍ରୀଙ୍କ ଘୋଷଣାକୁ କାର୍ଯ୍ୟକାରୀ କରିପାରି ନଥିଲା । ସମସ୍ତ ଚେଷ୍ଟା ବିଫଳ ହେବାରେ ସନ୍ ୧୯୧୯ ମସିହାରେ ଭାରତ ବିରୋଧୀ ରୋଲ୍‌ଟ–ଆକ୍ଟ ପ୍ରଣୟନ କରି ଭାରତୀୟମାନଙ୍କ ଭିତରେ ଗଭୀର ଦୁଃଖର ଛାୟା ପ୍ରବେଶ କରାଇ ଦେଇଥିଲେ । ସେଇ ବର୍ଷ ଏପ୍ରିଲ୍ ୧୩ ତାରିଖରେ ଜାଲିୟାନାବାଲା ପଡ଼ିଆରେ ଜଣେକ ଅର୍ଦ୍ଧ ପାଗଳ ଇଂରେଜ ଅଧିକାରୀ ଜେନେରାଲ୍ ଡାୟାର୍ ଏକ ଶାନ୍ତ ପରିବେଶରେ ବସିଥିବା ସଭା ଉପରକୁ କୌଣସି ପ୍ରକାରର ବିଧାନ ନକରି ଗୁଳି ବର୍ଷଣ କରାଇଥିଲେ । ଫଳ ସ୍ୱରୂପ ପ୍ରାୟ ବାରଶହ ନେତା ମୃତ୍ୟୁ ମୁଖରେ ପଡ଼ିଥିଲେ ଓ ୩,୬୦୦ ନେତା ଖଣ୍ଡିଆ ଖାବରା ହୋଇ ଯାଇଥିଲେ । ଏଇ ଲୋମହର୍ଷଣକାରୀ ସମ୍ବାଦ ପାଇବା ସଙ୍ଗେ ସମଗ୍ର ଭାରତବର୍ଷରେ ଶୋକର ଛାୟା ଖେଳି ଯାଇଥିଲା । ଆଉ ମନୋବଳ ଭାଙ୍ଗିବା ପୂର୍ବରୁ ମହାତ୍ମା ଗାନ୍ଧୀ ରାଜନୈତିକ ମଞ୍ଚ ଉପରକୁ ପଦାର୍ପଣ କରିଥିଲେ । ଗଙ୍ଗାଧର ତିଳକ ମୃତ୍ୟୁବରଣ କରିବା ପରେ ମହାତ୍ମା ଗାନ୍ଧୀ କଂଗ୍ରେସର ନେତୃତ୍ୱ ସମ୍ଭାଳିଥିଲେ ।

ଗାନ୍ଧିଜୀ ସେଇ ସମୟଠାରୁ ଇଂରେଜମାନଙ୍କ ବିରୁଦ୍ଧରେ ଅହିଂସାତ୍ମକ ଯୁଦ୍ଧର ଆହ୍ୱାନ ଦେଇ ଚାଲିଲେ । ସନ୍ ୧୯୨୨ ମସିହା ଫେବୃୟାରୀ ୫ ତାରିଖ ଦିନ ଯେତେବେଳେ ଉତ୍ତର ପ୍ରଦେଶର ଚୌରିଚୌରାଠାରେ ଗାନ୍ଧିଜୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ ହେଲା, ପୁଲିସ ସେମାନଙ୍କର ହିଂସାତ୍ମକ ଆକ୍ରମଣରେ ସତ୍ୟାଗ୍ରହୀଙ୍କୁ ଛତ୍ରଭଙ୍ଗ କରିଦେବା ସହିତ ବଡ଼ବଡ଼ ନେତାମାନଙ୍କୁ ଜେଲ୍ ଦଣ୍ଡରେ ଦଣ୍ଡିତ କରିଦେଲେ । ପାଞ୍ଚ ବର୍ଷ ଧରି ଚାଲିଥିବା ଶାନ୍ତ ବାତାବରଣ ପରେ ପୁଣି ଥରେ କଂଗ୍ରେସ ଏକାଠି ହୋଇଥିଲେ । କାରଣ ୧୯୨୭ ନଭେମ୍ବର ୮ ତାରିଖ ଦିନ ତତ୍‌କାଳୀନ ବାଲ୍‌ଡୱିନ ସରକାର ସାଇମନ୍ କମିଶନ୍ ନିଯୁକ୍ତି କରିବାରେ କଂଗ୍ରେସ ବିରୁଦ୍ଧାତ୍ମକ ସ୍ୱର ଉତ୍ତୋଳନ କରିଥିଲା । ସେଇ ବର୍ଷ ହିଁ ଜବାହରଲାଲ୍ ନେହେରୁ ଓ ସୁବାଷ ଚନ୍ଦ୍ର ବୋଷ ସ୍ୱାଧୀନତା ଲିଗ୍ ସ୍ଥାପନା କରିବା ସହିତ ସ୍ୱତନ୍ତ୍ରତା ରୂପକ ପ୍ରସ୍ତାବ ସ୍ୱୀକୃତି ଲାଭ କରିଥିଲା ।

ସନ୍ ୧୯୨୯ ଡିସେମ୍ବର ୩୧ ତାରିଖରେ ଲାହୋରର ରାବି ନଦୀ କୂଳରେ ଏକ ବିଶେଷ ଅଧିବେଶନର ଆୟୋଜନ କରାଯାଇଥିଲା । ସେଇଠି ରାଷ୍ଟ୍ରୀୟ-ମହାନ ସଂସ୍ଥାର ମୁଖ ନେତା ଜବାହରଲାଲ୍ ସମ୍ପୂର୍ଣ୍ଣ ସ୍ୱାଧୀନତା ରୂପକ ଏକ ପତାକା ଉଡ଼ାଇ ଥିଲେ । ଆଉ ବି ସମଗ୍ର ଭାରତବର୍ଷରେ ଏହାକୁ ପ୍ରଥମ ସ୍ୱାଧୀନତା ଦିବସ ବୋଲି ପାଳନ କରିଥିଲେ ।

ତିନି ମାସ ପରେ ମହାତ୍ମା ଗାନ୍ଧୀ ତାଙ୍କର ବିଶ୍ୱ ବିଖ୍ୟାତ ଦାଣ୍ଡି ଯାତ୍ରା ଆରମ୍ଭ କରି ଇଂରେଜ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ସେଇ ଯାତ୍ରା ଫଳରେ ହଜାର ହଜାର ଲୋକ ଜେଲ୍ ଯାଇଥିଲେ । ଗାନ୍ଧୀ–ଇରୱିନ୍ ଚୁକ୍ତିନାମା ସ୍ୱାକ୍ଷରିତ ହେବା ପରେ ଲୋକମାନେ ଜେଲ୍‌ରୁ ମୁକ୍ତି ପାଇଥିଲେ । ଗୋଲ୍ ଟେବୁଲ ବୈଠକରେ ଭାଗ ନେବା ପାଇଁ କଂଗ୍ରେସର ଏକମାତ୍ର ପ୍ରତିନିଧି ଭାବରେ ଗାନ୍ଧିଜୀ ଇଂଲଣ୍ଡ ଯାଇଥିଲେ, ମାତ୍ର ସେଠାରୁ ଫେରିବା ପରେ ତାଙ୍କୁ ପୁଣି ଜେଲ୍ ଭିତରକୁ ନେଇଗଲେ । ତାଙ୍କୁ ସମେତ କରି ଲକ୍ଷେ କୋଡ଼ିଏ ହଜାର ସତ୍ୟାଗ୍ରହୀଙ୍କୁ ଜେଲ୍ ଯିବାକୁ ପଡ଼ିଥିଲା । ଏତେ ସଂଖ୍ୟକ ସମର୍ଥକ ଦେଖି ଇଂରେଜ ସରକାର ନିଜର ପରାଜୟ ସ୍ୱୀକାର କରିବାସହିତ ପରସ୍ପର ଏକ ବୁଝାମଣା କରିଥିଲେ । ଫଳରେ ୧୯୩୫ରେ କଂଗ୍ରେସର ନୂଆ ନୀତିକୁ ସ୍ୱୀକୃତି ଲାଭ ମିଳିଥିଲା । ଅପର ପଟରେ ମୁସଲିମ୍ ଲିଗ୍ ଭାରତରେ କଂଗ୍ରେସର ବିରୋଧ ସଂସ୍ଥା ଭାବରେ ଛିଡ଼ା ହୋଇ ରହିଲା । ସନ୍ ୧୯୨୫ରେ ଯେଉଁ ଜିନ୍ନା ଭାରତକୁ ଗୋଟିଏ ରାଷ୍ଟ୍ର ବୋଲି କହିଥିଲେ, ସିଏ ହିଁ ଇଂରେଜମାନଙ୍କ ପ୍ରେରଣାରେ ତାଙ୍କ କଥାବାର୍ତ୍ତା ନୀତି ନିୟମରେ ପରିବର୍ତ୍ତନ ଆଣିଥିଲେ ।

ସନ୍ ୧୯୩୫ରେ ଯେଉଁ ନୂଆ ନୀତି ସ୍ୱୀକୃତି ଲାଭ କରିଥିଲା ସେଇ ଅନୁସାରେ ହୋଇଥିବା ଆଞ୍ଚଳିକ ବିଧାନ ସଭା ନିର୍ବାଚନରେ ଏଗାରଟି ଆସନରୁ ନଅଟିରେ ବିଜୟ ଲାଭ କରିଥିଲା । କଂଗ୍ରେସ

ମନ୍ତ୍ରିମଣ୍ଡଳ ଗଠନ ହେଲା । ମୁସଲିମ୍ ଲିଗ୍‌କୁ ଆସନ ଗ୍ରହଣ କରିବା ପାଇଁ ସୁଯୋଗ ଦେଇନଥିଲେ । ଆଉ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଆରମ୍ଭର ପରେ ପରେ କଂଗ୍ରେସ ଇଂରେଜ ସରକାରଙ୍କ ନୀତି ବିରୋଧରେ ଯାଇ ନିଜସ୍ୱ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଦେଇଥିଲେ ଇସ୍ତଫା ଦେଇ । ହାତକୁ ଆସିଥିବା ଆସନ ଭାରକୁ ଅକାରଣରେ ତ୍ୟାଗ କରିବା ଦ୍ୱାରା ମସ୍ତ ବଡ଼ ଭୁଲ୍ ହୋଇଗଲା ବୋଲି ପରେ ନେତାମାନେ କହିଥିଲେ ।

ସ୍ନ ୧୯୪୨ ମାର୍ଚ୍ଚ ୮ ତାରିଖରେ ଜାପାନର ରେଙ୍ଗୁନ୍ ଉପରେ ଅଧିକାର କରିବା ଦ୍ୱାରା, ଭାରତୀୟ ନେତାମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଇଂରେଜ ସରକାର ମାର୍ଚ୍ଚ ୧୧ ତାରିଖରେ କ୍ରିପ୍ସ କମିଶନ ଘୋଷଣା କରିଥିଲେ । ଏଥିରେ ଥିବା କପଟ ପୂର୍ଣ୍ଣ ନୀତି ତଥା ପରିସ୍ଥିତିକୁ ଦେଖି ଗାନ୍ଧିଜୀ ସମେତ ଅନ୍ୟ ନେତାଗଣ ଏକାଠି ହେବା ସମ୍ଭବ ହୋଇନଥିଲା । ଫଳରେ ଇଂରେଜମାନେ ଭାରତ ଛାଡ଼ିବାକୁ ବାଟ ଫିଟି ଯାଇଥିଲା । ନୂଆ ନୀତିର ଆମୂଳଚୂଳ ପରିବର୍ତ୍ତନ ହୋଇଥିଲା । ସୁବର୍ଣ୍ଣ ସୁଯୋଗ ଭାବି ଗାନ୍ଧିଜୀଙ୍କର ଭାରତ ଛାଡ଼ ଆନ୍ଦୋଳନ ରୂପକ ପ୍ରସ୍ତାବ ଇଂରେଜମାନଙ୍କ ବିରୁଦ୍ଧରେ ଉଦ୍‌ବେଗଜନକ ଧମକ ହୋଇଥିଲା । ଆଉ ବି ଭାରତବାସୀ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାର ଆହ୍ୱାନ ଦେଲେ କଂଗ୍ରେସର ସେଇ ବମ୍ବେ ଅଧିବେଶନରେ । ନିଜ ଭାଷଣରେ ୭୦ ମିନିଟ କାଳ ହିନ୍ଦୀରେ ଓ ୭୦ ମିନିଟ ଧରି ଇଂରାଜୀରେ ଦେଶବାସୀଙ୍କୁ କହିଥିଲେ । ସେଇ ଭାଷଣ ଭିତରେ ସେ ଶାନ୍ତିପୂର୍ଣ୍ଣ, ସରଳ ଭାଷାରେ କହିଥିଲେ—

"ଅହିଂସା ନୀତି ପାଳନ କରିବାରେ ହିଁ ପ୍ରତ୍ୟେକ ବ୍ୟକ୍ତି ସ୍ୱାଧୀନଭାବେ ଅନୁସାରେ କାର୍ଯ୍ୟ କରିପାରେ । ସତ୍ୟାଗ୍ରହୀମାନେ ବଞ୍ଚିବା ପାଇଁ ନୁହନ୍ତି । ମରିବାର ଶପଥ ନେବା ଉଚିତ । ଯେଉଁ ସମୟରେ ଲୋକମାନେ ମୃତ୍ୟୁକୁ ଖୋଜିବା ପାଇଁ ରଣ କ୍ଷେତ୍ରରେ ପଦାର୍ପଣ କରେ, ସେତିକି ବେଳେ ଦେଶ ମୃତ୍ୟୁର ବିଜୟ ଲାଭ କରି ଅମର ହୋଇଯାଏ । ତେଣୁ, ତୁମେମାନେ କର ବା ମର ।"

ଗାନ୍ଧୀଜୀଙ୍କର ଉପରୋକ୍ତ ଭାଷଣ ଭାରତବାସୀଙ୍କ ମନ ଗହନରେ ପ୍ରବେଶ କରିବା ସହିତ ଦେଶ ସ୍ୱାଧୀନର ନୂତନ ଆଶା ସଞ୍ଚାର ହୋଇଗଲା । ଲୋକମାନଙ୍କ ଉତ୍ତେଜନା ବୃଦ୍ଧି ପାଇଲା । ଆଉ ବି ଇଂରେଜମାନେ ଭୟଭୀତ ହୋଇ ଉଠିଲେ । ତେଣୁ ଗାନ୍ଧିଜୀ ତଥା ଅନ୍ୟ କେତେକ ନେତାମାନଙ୍କୁ ଜେଲ୍‌ରେ ରଖିଥିଲେ । ଜେଲ୍ ଯିବାର ଖବର ଭାରତର ପ୍ରାନ୍ତେ ପ୍ରାନ୍ତେ ପ୍ରଚାର ହୋଇଯିବାରେ ଦେଶବାସୀ ବିଦ୍ରୋହାଗ୍ନିରେ ପ୍ରଜ୍ୱଳିତ ହୋଇ ଉଠିଲେ । ଦେଶସାରା ନିଆଁ ଜଳିବା ଦେଖି ଇଂରେଜମାନେ ଭାବି ନେଲେ ଦେଶକୁ ସ୍ୱାଧୀନତା ପ୍ରଦାନ କରିବା ବ୍ୟତୀତ ଅନ୍ୟ ଭାଷା ନାହିଁ ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଇଂଲଣ୍ଡ ଓ ତା'ର ମିତ୍ର ରାଷ୍ଟ୍ରର ବିଜୟ ଲାଭ ତଥା ନବ ନିର୍ବାଚନରେ ଚର୍ଚ୍ଚିଲ୍ ଓ ତାଙ୍କ ଦଳ ପରାଜୟ ସ୍ୱୀକାର କରିବା ଏବଂ ଇଟାଲିର ଲେବର ପାର୍ଟି ବିଜୟ ଲାଭ କରିବା ପରେ ସ୍ପଷ୍ଟ ହୋଇଗଲା ଯେ ଇଂରେଜମାନେ ଭାରତକୁ ସ୍ୱାଧୀନତା ପ୍ରଦାନ କରିବାର ସପକ୍ଷରେ ଅଛନ୍ତି । ସେଇ ସମୟରେ ନେତାଜୀ ସୁବାଷ ଚନ୍ଦ୍ରଙ୍କ ଭାରତୀୟ ରାଷ୍ଟ୍ରୀୟ ସେନା ବାହୀନିର କାର୍ଯ୍ୟ କଳାପ ଦେଶ ସାରା ଖ୍ୟାତିଲାଭ କରିଥିଲା । ଇଟାଲି ସରକାର ଭାରତରେ ଦେଖାଦେଇଥିବା ସମସ୍ୟା ଉପରେ ଚିକିନିଖି ଜାଣିବା ପାଇଁ ଗୋଟିଏ କ୍ୟାବିନେଟ୍ ମିଶନ୍ ପଠାଇବାର ପ୍ରସ୍ତାବ ଦେଇଥିଲେ । ଅପର ପଟରେ ମୁସଲିମ୍ ଲିଗ୍ ବିପକ୍ଷରେ ରହିଲେ । ଫଳରେ କଲିକତାଠାରେ ଡାଇରେକ୍ଟ ଆକ୍ସନ୍ ନିଆଯାଇଥିଲା ଓ ହିନ୍ଦୁ–ମୁସଲିମ୍ ଭିତରେ ଥିବା ପବିତ୍ରତା ଖଣ୍ଡବିଖଣ୍ଡିତ ହୋଇଗଲା । ସେପ୍ଟେମ୍ବର ୨ ତାରିଖରେ ଭାଇସ୍‌ରାୟ କାଉନସିଲ୍ ନିର୍ମାଣ କରାଗଲା, ଯାହାର ଉପାଧ୍ୟକ୍ଷ ହୋଇଥିଲେ ଜବାହରଲାଲ୍ ନେହେରୁ । ଡିସେମ୍ବର ୯ ତାରିଖରେ ଯେଉଁ ସମ୍ବିଧାନ ସଭାର ଅଧିବେଶନ ବସିଲା, ସେଥିରେ ମୁସଲିମ୍ ଲିଗ୍ ଅଂଶ ଗ୍ରହଣ କରିନଥିଲେ । ଫଳରେ ଦୁଇ ଦଳ ଆଉ ଏକାଠି ରହିବେ ନାହିଁ ବୋଲି ଜଣାପଡ଼ିଲା ।

ସ୍ନ୧୯୪୭ ମସିହା ଫେବୃୟାରୀ ମାସରେ ଇଂରେଜମାନେ ଘୋଷଣା କଲେ ଭାରତ ଛାଡ଼ି ଦେବାକୁ ବୋଲି । ତେଣୁ ଲର୍ଡ଼ ମାଉଣ୍ଟ ବ୍ୟାଟେନ୍‌ଙ୍କୁ ଶେଷ ଭାଇସ୍‌ରାୟ ଭାବେ ନିଯୁକ୍ତି ଦିଆଗଲା । ଇଂରେଜମାନଙ୍କର ଏତାଦୃଶ ଘୋଷଣାକୁ ମୁସଲିମ୍ ଲିଗ୍ ଗ୍ରହଣ ନକରି, ନିରାଶ ହୋଇ ଭାରତର ଉତ୍ତର–ପଶ୍ଚିମ ସୀମା ତଥା ପଞ୍ଜାବରେ ଦଙ୍ଗା ସୃଷ୍ଟି କରିଦେଲେ ।

ଜୁନ୍‌ମାସ ୩ ତାରିଖରେ ବ୍ରିଟିଶ୍ ସରକାରଙ୍କ ନିଷ୍ପତ୍ତି ଅନୁସାରେ ମାଉଣ୍ଟ ବ୍ୟାଟେନ୍ ଘୋଷଣା କଲେ—"ଅଗଷ୍ଟ ୧୫ ତାରିଖ ଦିନ ଦେଶକୁ ଭାରତ ଓ ପାକିସ୍ଥାନ ରୂପରେ ବିଭାଜନ କରି ଇଂରେଜମାନେ ଦେଶକୁ ପରିତ୍ୟାଗ କରିବେ" । ଉପରୋକ୍ତ ନୀତିଗତ ନିଷ୍ପତ୍ତି ବିରୁଦ୍ଧରେ ଅଂସଖ୍ୟ ଲୋକ ପାଟିତୁଣ୍ଡ କରିଥିଲେ, ଫଳରେ ମୃତ୍ୟୁବରଣ କରିଥିଲେ । ଯୁଗ ଯୁଗ ଧରି ପରସ୍ପର ପାଖ ପଡ଼ୋଶୀ ହୋଇ ରହୁଥିବା ବେଳେ ଆଜି ପରସ୍ପର ଶତ୍ରୁସମ ହୋଇଗଲେ । ଆବାଳ–ବୃଦ୍ଧ–ବନିତା ନରସଂହାରରେ ଝାସ ଦେଇଥିଲେ ।

୧୪ ଅଗଷ୍ଟର ରାତି ଅଧରେ ଦୁଇ ଦେଶରେ ହେଉଥିବା ବ୍ୟାପକ ନରସଂହାର ଭିତରେ ପ୍ରାଚୀନତମ ଦେଶକୁ ଦୁଇ ଖଣ୍ଡ କରି ଦେଇ ଭାରତ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଭାବେ ପରିଗଣିତ ହୋଇଥିଲା ।

କ୍ୱାଟର୍ସ ନଂ ଭି/୧୨୨,
ୟୁନିଟ୍–୮, ଭୁବନେଶ୍ୱର–୧୨ ।

# ନୂଆ ଗାଁ ସ୍ମୃତି ସ୍ତମ୍ଭ

* ଡକ୍ଟର କୃତ୍ତିବାସ ନାୟକ

ବେଶୀ ଦିନ ନୁହେଁ–କଥାଟିଏ,
ନୟାଗଡ଼ ନାମେ ଗଡ଼ଜାତ ରାଜ୍ୟେ–
ଅନ୍ଧାରି ଶାସନ ଚାଲିଥାଏ (୧)

ସହି ପାରିଲେନି ଅତ୍ୟାଚାର,
ମାତିଲେ ପ୍ରଜାଏ–ମେଳି କରି ପୁଣି–
କାଢ଼ିଲେ ନିଜର ଧନୁଶର (୨)

କୁମ୍ଭାପଡ଼ାଠାରେ ହେଲା ସଭା,
ପ୍ରଜାମଣ୍ଡଳରେ କନ୍ଧମେଳି ମିଶି–
କହିଲେ–'ବିଦେଶୀ ହଟାଇବା' (୩)

ଠେଙ୍ଗା–ବାଡ଼ି ଧରି ବାହାରିଲେ,
ଟେଲିଫୋନ୍ ତାର କଟାକଟି କରି–
ସରକାରୀ ଘର ପୋଡ଼ି ଦେଲେ (୪)

ବୀରବାଜା ବାଜେ ଢାଉଁ ଢାଉଁ,
ନୟାଗଡ଼ ବଣ, ପାହାଡ଼ କମ୍ପିଲା–
ମଶାଲ ଜଳିଲା–ଦାଉ ଦାଉ (୫)

କନ୍ଧ ପିଲା ନେତା ମଣ୍ଡଳର,
ଡାକୁଆ ନାମରେ ସଭିଏଁ ଜାଣନ୍ତି–
ଆଗରେ ଚାଲିଛି–କଣ୍ଠି ବୀର (୬)

ଲକ୍ଷୁଆ ସଜନା ମାଡ଼ିଗଲେ,
ନୂଆ ଗାଁ'ଠାରେ ପୁଲିସ ବାହିନୀ–
ବନ୍ଧୁକ ସଜେଇ ରହିଥିଲେ (୭)

ଉଣେଇଶ' ବୟାଳିଶି ସାଲ,
ଅକ୍ଟୋବର ମାସ ଦଶ ତାରିଖରେ–
ସକାଳଟି ଥିଲା ଶୁଭକାଳ (୮)

ଦେଖଗଲା ତହିଁ ଭେଟାଭେଟି,
କଣ୍ଠି ଡାକୁଆର ରକ୍ତ ଧାରରେ
ଲାଲ ହେଲା ନୂଆ ଗାଁ ମାଟି (୯)

ଶରୀରରୁ ଛାଡ଼ିଗଲା ପ୍ରାଣ,
ଶହୀଦ ହୋଇଲା ଜାତି ପାଇଁ ବୀର–
କରି ଗାନ୍ଧୀଙ୍କର ଜୟ ଗାନ (୧୦)

ସ୍ମୃତି ସ୍ତମ୍ଭ ଏକ ହେଲା ଠିଆ,
ବୀର ଡାକୁଆର ସନମାନ ପାଇଁ–
ତୀର୍ଥଭୂମି ହେଲା ନୁଆ ଗାଁଆଁ (୧୧)

ସେଇ ସ୍ମୃତି ସ୍ତମ୍ଭ କହୁଥାଏ,
ଜାତି, ଦେଶ ପାଇଁ ରକତ ଢାଳିଲେ–
ସ୍ୱାଧୀନତା ସିନା ମିଳିଯାଏ (୧୨)

ସୂଚନା :
ବୀର ଯୁବକ କଷ୍ଟି ଡାକୁଆ ନୁଆଗାଁ ଥାନା ଆଗରେ ପୁଲିସ ଗୁଳିରେ ଶହୀଦ ହୋଇଥିଲେ । ପ୍ରତିବର୍ଷ ଅକ୍ଟୋବର ୧୦ ତାରିଖରେ ସେଇଠି ଶହୀଦ ଦିବସ ପାଳିତ ହୋଇ ଆସୁଛି । କଷ୍ଟି... ଡାକୁଆ ପ୍ରଜାମଣ୍ଡଳ... ନେତୃତ୍ୱ ନେଇଥିଲେ ।

ଆକାଶବାଣୀ, ସମ୍ବଲପୁର ।



# ଚେର

✱ ଶ୍ରୀ ତୀର୍ଥାନନ୍ଦ ମିଶ୍ର

ମୋତେ ଦୃଢ଼ କରି ବାନ୍ଧି ରଖିଛି
ବସୁଧାର ଚେରଟିଏ–
ସଂସ୍କୃତି ।

ମୋ ଦେହର ମାନଚିତ୍ରକୁ
'ସଜାଇଛି ଚେରଟିଏ, ତୁଳିହୋଇ–
ସଭ୍ୟତା ।

ମୋ ଆଖିରେ
ପ୍ରତ୍ୟୟ ଆଉ ଅବିଶ୍ୱାସର
ବିରୋଧାଭାସ ବୋଳି ଦେଇ
ମୋତେ ସଜାଉଛି ଇଚ୍ଛାମତେ
ବେଡ଼ିପରି ଛନ୍ଦି ଦେଇ ଚେରଟିଏ–
ପରିବାର ।

ମାତ୍ର ମୋତେ ସବୁ ବନ୍ଧନରୁ
ଆପଣା ଛାଏଁ ମୁକ୍ତି ଦେଇ
ତା'ବିଶ୍ୱାସର ବଳୟ ଗୁରିପାଖେ
ଘୂରାଇ ଆଣୁଛି, ନିଜକୁ ପାଲଟାଇ
ସମ୍ବେଦନାର ସମର୍ପଣର ଚେରଟିଏ–
ମୋ ମା', ଭାରତବର୍ଷ ।।

ବଣ୍ଟୁଆରୀପଡ଼ା, ଅନ୍ଧପୁର,
କିଶୋର ନଗର,
କଟକ-୭୫୯୧୨୬ ।



ସୂଚନା ଭବନଠାରେ ଓଡ଼ିଶା ବିଧାନ ସଭା ସଦସ୍ୟମାନଙ୍କ ଉଦ୍ଦେଶ୍ୟରେ ଆୟୋଜିତ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଉଦ୍‌ଯାପନୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ଲୋକସଭା ବାଚସ୍ପତି ଶ୍ରୀ ଶିବରାଜ ପଟିଲଙ୍କୁ ଏକ ଟାରକସି କାମ ଉପହାର ଦେଉଛନ୍ତି ।



ଜଳସେଚନ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ରାଜ ଭବନଠାରେ ରାଜ୍ୟପାଳ
ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀଙ୍କ ସହ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।



ରାଜ୍ୟରେ ଶକ୍ତି ଆବଣ୍ଟନର ଉନ୍ନତି ବିଷୟରେ ଏ. ଡି. ବି. ଓ ଓ. ଇ. ସି. ଏଫ୍.ର ଏକ ପଦାଧିକାରୀ ଦଳ ବିଧାନ ସଭା ମୁଖ୍ୟମନ୍ତ୍ରୀଙ୍କ ଗୃହ ପ୍ରକୋଷ୍ଠରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହ ଆଲୋଚନା କରୁଛନ୍ତି । ଶକ୍ତି ମନ୍ତ୍ରୀ ଶ୍ରୀ କାଳିନ୍ଦୀ ଚରଣ ବେହେରା ଓ ଶକ୍ତି ଶାସନ ସଚିବ ଶ୍ରୀ ଭି. ପଟ୍ଟନାୟକ ଉପସ୍ଥିତ ଥିଲେ ।



ଭୁବନେଶ୍ୱରଠାରେ ବିଶ୍ୱ ପରିବେଶ ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ପରିଷଦର ପରିବେଶ ଭବନକୁ ଉଦ୍‌ଘାଟନ କରୁଛନ୍ତି ।



ରାଜ ଭବନଠାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ, ଉତ୍କଳ ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଏବଂ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କ ସହିତ ବିଶ୍ୱବିଦ୍ୟାଳୟ ଶିକ୍ଷା ଓ ପ୍ରଶାସନ ବିଷୟରେ ଆଲୋଚନା କରୁଛନ୍ତି ।




ଭୁବନେଶ୍ୱରସ୍ଥ ପ୍ରାଚୀ ହୋଟେଲଠାରେ ଅନୁଷ୍ଠିତ ଏକ ଉତ୍ସବରେ ଶ୍ରୀ ଫେଲିକ୍ସ ଲେସିଙ୍ଗରଙ୍କୁ କ୍ରାନ୍ତିଧାରା ତରଫରୁ ସ୍ୱାଗତ ସମ୍ବର୍ଦ୍ଧନା । ଉକ୍ତ ଉତ୍ସବରେ ସାଧାରଣ ଅଭିଯୋଗ ଓ ପେନସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ମୁଖ୍ୟ ଅତିଥି ରୂପେ ଯୋଗଦାନ କରିଥିଲେ ।



ରାଜ ଭବନଠାରେ ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ସଂଘର ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀମାନେ ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀଙ୍କ ସହିତ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।



ରାଜ୍ୟରେ ତୈଳ ବିଶୋଧନାଗାର ଏବଂ ଶକ୍ତି ପ୍ରକଳ୍ପ ସ୍ଥାପନ ବିଷୟରେ ପ୍ରବାସୀ ଭାରତୀୟ ଶ୍ରୀ ସନତ୍ ଟାକ୍ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଆଲୋଚନା କରୁଛନ୍ତି ।




ବଲାଙ୍ଗୀର ଜିଲ୍ଲାପାଳଙ୍କ ସମ୍ମିଳନୀ ଗୃହରେ ଅନୁଷ୍ଠିତ ୩୭ତମ ପେନ୍‌ସନ୍ ଅଦାଲତରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ଅଧ୍ୟକ୍ଷତା କରୁଛନ୍ତି ।



ନୂଆ ଦିଲ୍ଲୀଠାରେ ଅନୁଷ୍ଠିତ ହେବାକୁ ଯାଉଥିବା ଭାରତ ଆନ୍ତର୍ଜାତିକ ବାଣିଜ୍ୟ ମେଳା ୧୯୯୩ରେ ଓଡ଼ିଶାର ଅଂଶ ଗ୍ରହଣ ବିଷୟରେ ସଚିବାଳୟଠାରେ ଅନୁଷ୍ଠିତ ଏକ ବୈଠକରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ସଭାପତିତ୍ୱ କରୁଛନ୍ତି ।



ସୂଚନା ଭବନଠାରେ ଓଡ଼ିଶା ଶାରୀରିକ ଅକ୍ଷମ ସଙ୍ଘ ଦ୍ୱାରା ଆୟୋଜିତ ଏକ ପ୍ରଦର୍ଶନୀକୁ ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ଓ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯାଦବ ମାଝୀ ବୁଲି ଦେଖୁଛନ୍ତି ।



ଭୁବନେଶ୍ୱରଠାରେ ନାଟ୍ୟକାର ଶ୍ରୀ ବ୍ୟୋମକେଶ ତ୍ରିପାଠୀଙ୍କ ୭୫ତମ ଜୟନ୍ତୀ ଉତ୍ସବରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ଓ ଶକ୍ତି ମନ୍ତ୍ରୀ ଶ୍ରୀ କାଳିନ୍ଦୀ ଚରଣ ବେହେରା ।




ସୂଚନା ଭବନଠାରେ ଅନୁଷ୍ଠିତ ବ୍ଲକ୍ ଉନ୍ନୟନ ଅଧିକାରୀ ଓ ପ୍ରକଳ୍ପ ଅଧିକାରୀମାନଙ୍କ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି । ପଞ୍ଚାୟତି ରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଉପସ୍ଥିତ ଅଛନ୍ତି ।



ଭୁବନେଶ୍ୱର ସହରାଞ୍ଚଳରେ ବୃକ୍ଷରୋପଣ କାର୍ଯ୍ୟକ୍ରମକୁ ଭୁବନେଶ୍ୱର ନଗରପାଳିକା
ଅଧ୍ୟକ୍ଷା ଶ୍ରୀମତୀ କୀରଣବାଳା ମଙ୍ଗରାଜ ଉଦ୍‌ଘାଟନ କରୁଛନ୍ତି ।



ଓଡ଼ିଶା ଖାଦି ଉନ୍ନୟନ ନିଗମ ଦ୍ୱାରା "କଳିଙ୍ଗ ଖାଦି" ବିକ୍ରୀ ବିଭାଗକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କ ବିଧାନ ସଭା ଗୃହ ପ୍ରକୋଷ୍ଠରେ ଉଦ୍‌ଘାଟନ କରୁଛନ୍ତି ।



ଭୁବନେଶ୍ୱରଠାରେ ଅନୁଷ୍ଠିତ ପରିବାର ଉପଦେଷ୍ଟା କେନ୍ଦ୍ରର ରାଜ୍ୟସ୍ତରୀୟ ପ୍ରଶିକ୍ଷଣ ତାଲିମ କାର୍ଯ୍ୟକ୍ରମକୁ ସମାଜ ମଙ୍ଗଳ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରା ଉଦ୍‌ଘାଟନ କରୁଛନ୍ତି ।

# ସ୍ୱର୍ଗାଦପି ଗରୀୟସୀ

✱ ଶ୍ରୀ ସତ୍ୟନାରାୟଣ ମିଶ୍ର

ଧନଧାନ୍ୟ ଭରା ସୁଜଳା ସୁଫଳା
ବସୁଧା ଆମରି ମାଆ
ସନ୍ତାନ ସେବାରେ ଶୋଣିତ ନିଗାଡ଼ି
ରଖିଛି ଯିଏ ତା' ନାଆଁ ॥

ପଲକ ପାଇଁ ଏ' ମାଟିର ମମତା
ପାଇବାକୁ ଆନପୁରେ !
ମହୀୟସୀ ପ୍ରାଣା ଜନନୀ ସେ ପରା
ମନଜାଣେ ଥାଇ ଦୂରେ ।

ଦୁର୍ଗମ ପଥେ ଦୁର୍ବାର ଆମେ
ଏକା ସେ ଆମରି ସାହା
ଧନଧାନ୍ୟ ଭରା ସୁଜଳା ସୁଫଳା
ବସୁଧା ଆମରି ମାଆ ॥

ସହି ନାହି ସିନା ନିରତେ ଗମିଲେ
ଅନ୍ୟାୟ-ଅମଡ଼ା ପଥେ
ସତ୍ୟ, ଶାନ୍ତି ପାଇଁ ଦେଇଛି ସେ କ୍ଷମା
ଦୋଷକଲେ ଅଜାଣତେ ।

ତାହାରି ଆଶିଷେ ଆମେ ମହୀୟାନ
ତା' ବିହୁନେ ନାହିଁ ଗାହା
ଧନଧାନ୍ୟ ଭରା ସୁଜଳା ସୁଫଳା
ବସୁଧା ଆମରି ମାଆ ॥

---

ଅମଲାପଡ଼ା
ଫୁଲବାଣୀ-୭୬୨୦୦୧ ।

# ତଥାପି ଜାଣିନୁ ବନ୍ଧୁ

* ଶ୍ରୀ କୈଳାସ ତ୍ରିପାଠୀ

ମୃଦୁ ଛନ୍ଦେ ତୁମେ ଆସ
ମନ୍ଦ ପଦ ପାତେ
ବର୍ଷକରେ ଥରେ ହେଉ
ବର୍ଷ ବର୍ଷ ଧରି
ସବୁ ବର୍ଷବନ୍ଦୀ ତୁମେ
ବନ୍ଦ ଦୁଇ ହାତେ
ସବୁ କିଛି ରଖି ଅଛ
ପଲକରେ ଭରି ।

ତୁମେ ଜାଣ ଏ ମାଟିର
ଗତି ଓ ପ୍ରଗତି
ତୁମେ ଜାଣ ଏ ଭୂଇଁର
ପରିଗ୍ରହ ରୂପ
ତୁମେ ଜାଣ ଆବର୍ତ୍ତନେ
କିବା ଯେ ପ୍ରତିତି
ତୁମେ ଜାଣ ଏ ଦେଶର
ସମ୍ପ୍ରତି ସ୍ୱରୂପ ।

ତୁମେତ ଦେଖିଛ ଏଠି
ଅନ୍ଧାରର ଛାୟା
ଦେଖିଛ ବି ଲାଠିଗୁଳି
ବାରୁଦ କମାଣ
ଗୁଲାମ ପିଠିର ଦାଗ
କଙ୍କାଳର କାୟା
ଲାଲ୍ ମାଟି କାନ୍ଥର
ରକ୍ତାକ୍ତ ପ୍ରମାଣ ।

ଏବେତ ଦେଖୁଛ ବନ୍ଧୁ
ଆଲୋକ ଝଲକ
ଅହର୍ନିଶି ଅନ୍ଧାରର
ତୀବ୍ର ପରାଭବ
ସ୍ୱରାଜ ସମ୍ରାଟ ଆମେ
ମୁକ୍ତିର ପ୍ରତୀକ
ମଲ୍‌ମଲ୍ ତିରଙ୍ଗାର
ଚିହ୍ନିତ ବିଜୟ ।

ଇତିହ ରହିଛି ଜୀଇଁ
ରହିଛି ସଂସ୍କୃତି
ଚତୁର୍ଧାମ ଗ୍ରନ୍ଥ ଶାସ୍ତ୍ର
ଶ୍ରୁତି ମନ୍ତ୍ର ବେଦ
ଆକାଶ, ତ୍ରିଶୂଳ, ଅଗ୍ନି,
ଆର୍ଯ୍ୟଭଟ୍ଟ କୃତୀ
ବିବିଧରେ ଆମ ଗର୍ବ
ସ୍ପର୍ଶିଛି କ୍ଷିତିଜ ।

ଆମେ ଜାଣୁ ଏବେ ନାହୁଁ
ନାହିଁର' କାଙ୍ଗାଳ
ଶାସିତ ଶୋଷିତ ଅବା
ଦଳିତ ପେଷିତ
ଆମେ ଜାଣୁ ଆମ ମୂଲେ
କେହି ସମତୁଲ
ନାହିଁ ମହାଶୂନ୍ୟ ତଳେ
ଆଉକେ ଭାରତ ।

ତଥାପି ଜାଣୁନୁ ବନ୍ଧୁ
ଚେତନାର ତାରେ
କାହିଁକି ଆଳାପ ତୋଳେ
ନିଃସ୍ୱତା ଆରୋହ
କାହିଁକି ଯେ ନେତି ନେତି
ଆର୍ତ୍ତିର ଚିତ୍କାରେ
ସମକ୍ଷେ ସ୍ଥବିର ଏଠି
ନିର୍ଜୀବ ବିଗ୍ରହ ?

ସ୍ନେହପ୍ରୀତି ହାର୍ଦ୍ଦିକତା
ଭେଜାଲ ଭେଜାଲ
କାହିଁକି ଯେ ଲାଗେ ବନ୍ଧୁ
ଉଦ୍‌ଭଟ ଭାବନା
କାହିଁକି ଅତନ୍ଦ୍ର ଏଠି
ଜ୍ୱଳନ୍ତ ମଶାଲ
ପ୍ରତିଟି ହୃଦୟେ ଶୀଖା
ତୋଳେ ପ୍ରତାରଣା ।

ଆଶା ଓ ବିଶ୍ୱାସ ସାଥେ
ଶୂନ୍ୟ ଆତ୍ମୀୟତା
ଆମର କି ଆତ୍ମା ନାହିଁ
ଆମେ କି ପଥର
ସେଥିପାଇଁ ସବୁ ଥାଇ
ନାହିଁ ସତେଜତା
ଜାଣିନାହୁଁ ତୁମେ କହ
ଅଗଷ୍ଟ ପନ୍ଦର ।

'କଳ୍ପନାଲୋକ'
କ୍ୱାର୍ଟର ନଂ: ୩/୨, ଟାଇପ୍ ଆଇ-ଭି-ବି,
ୟୁନିଟ୍-୩, ଭୁବନେଶ୍ୱର ।

# ପନ୍ଦର ଅଗଷ୍ଟ କୁହ କୁହ

* ଶ୍ରୀ ଜ୍ଞାନରଞ୍ଜନ ମିଶ୍ର

ପନ୍ଦର ଅଗଷ୍ଟ କୁହକୁହ
ସବୁ ଦେଶ ଜାତି ପାଇଁ ସ୍ୱାଧୀନତା ଦିବସଟା
ସତେ କ'ଣ ଦୁଶ୍ଚିନ୍ତା ଓ ଭୟର ବିଷୟ ?

ପନ୍ଦର ଅଗଷ୍ଟ !
ଯେବେଯେବେ ଆସ ତୁମେ ଏ ଭାରତବର୍ଷେ
ବହୁ କିଛି କୁହାଯାଏ, ବହୁ କଥା ମନେ ପଡ଼େ
ଆଜିର କାଳବେଳାର ତୁଳନା କଲେ ତ
ହୁଏ ମନ କଷ୍ଟ ।

ପନ୍ଦର ଅଗଷ୍ଟ
ସ୍ୱାଧୀନତା ଦିବସର ତୁମେ ତ ସନ୍ଧକ
କେତେ କେତେ ତ୍ୟାଗୀ ଯୋଗୀ
ସାଧନାରେ କରି ତ୍ୟାଗ ଯୋଗ
ଦେଖୁଥିଲେ ଯେଉଁ ସ୍ୱପ୍ନ ଭବିଷ୍ୟତ ଲାଗି
ତାଙ୍କ ଅନ୍ତେ ସେ ଦଶା ଓଲଟିଗଲା
ଆଜି ଦିଏ ଅଶେଷ ସନ୍ତାପ ।

ସ୍ୱାଧୀନତାର ସ୍ୱରୂପ କ'ଣ ଥିଲା କେଜାଣି ସେଦିନ
ଆଜିତ ସର୍ବତ୍ର ବିଦ୍ୟମାନ
ପରାଧୀନତା, ଦୁଃଖର ହାରାହାରି ନିଜକୁ ଦୁର୍ଦ୍ଦିନ ।

କ୍ଷମତାର ରାଜନୀତି ବିଷମଞ୍ଚି ଚୁଣିଚୁଣି ଘୁଲେ
ଖଲିସ୍ତାନୀ, ଉଲ୍‌ଫା ଓ ନକ୍ସଲ ଗଡ଼ିଗଡ଼ି ଗଲେ,
ଦୁନିଆ ଯେତେ ତେଲିକି ଦେଖାଇ ଖସିଯାନ୍ତି
ନିରୀହ ଜନତା ଆଉ ଶିକ୍ଷକନେ ଆଶ୍ୱସ୍ତ ହୁଅନ୍ତି
ପ୍ରାଣପୀଡ଼ା ବିଭେଦ ଓ ଦାରିଦ୍ର୍ୟର ତୀକ୍ଷ୍ଣ କରବାଳେ ।

ପନ୍ଦର ଅଗଷ୍ଟ କୁହକୁହ
ସବୁ ଦେଶ ଜାତି ପାଇଁ ସ୍ୱାଧୀନତା ଦିବସଟା
ସତେ କ'ଣ ଭୟ ଆଉ କୋହର ବିଷୟ ?

---

ସମ୍ପାଦକ, ସ୍ୱପ୍ନବାର୍ତ୍ତା (ଦୈନିକ),
ରାଉରକେଲା – ୭୬୯୦୦୧ ।

# ଅଗଷ୍ଟ ବିପ୍ଳବ

* ଶ୍ରୀ କୃପାସିନ୍ଧୁ ପଣ୍ଡା

କାର ଅବା ମର ବାଣୀ
ସ୍ୱାଧୀନତା ଆନ୍ଦୋଳନର ପବିତ୍ର କାହାଣୀ
ଦୀର୍ଘ ପଚାଶ ବର୍ଷ ପରେ
କି ଲାଭ ବଖାଣି ?

ଯିଏ ଗଲା ଅତୀତଟି ଯିଏ
ଥିଲା ବୋଲି ଇତିହାସ କହେ ।
ଆଈ ବୁଢ଼ୀ ଗପ ପରି ଲାଗେ
ଆକାଶର ଜହ୍ନଟିକୁ ଅଝଟ ଶିଶୁ ପୁଣି ମାଗେ
ସେ ଜାଣିନି ବାସ୍ତବତା କ'ଣ ?

କାରଖାନା ଘର ତାଲା ବନ୍ଦ କରେ
ଅସହଯୋଗ ଶବ୍ଦକୁ ଗାନ୍ଧୀ ବୁଢ଼ାଠାରୁ ଆଣେ ଧାରେ
ଗାଡ଼ି ପୋଡ଼େ, ବନ୍ଧକାଟେ, ବଜାରକୁ ଲୁଟେ
ସେ ଜାଣେନି ଏ ସବୁ ଘଟିଥିବା ସମାଜ ଆଗରେ ।

ସେ ଶିଶୁକୁ ବୁଝାଇବ କିଏ ?
କଥା କଥାକେ ଯିଏ ବନ୍ଧୁକ ଫୁଟାଏ
ତା'ର ହୃଦୟ ଅଶୋକଙ୍କଠାରୁ ଆହୁରି କଠିନ
ସମାଜର ଚନ୍ଦ୍ର ବଦନୀରେ ସେ ଆଜି ନିର୍ଦ୍ଦୟ
ସେ ଶିଶୁର ଯୌବନ ଆସିବ ତେତିଶି ବର୍ଷରେ
ଅପରନ୍ତୁ କୈଶୋରଟା ଘୁଞ୍ଚିଗଲା ପରେ
ବୋଝ ସିଏ ମାଆ ପାଇଁ
ବୋଝ ସିଏ ବାପା ପାଇଁ
ବୋଝ ମଧ୍ୟ ଏ ସମାଜ ପାଇଁ
ତାଲିମ ପାଇବ ଶିଶୁ ଟଙ୍କା ପାଇବାର ଘୋଡ଼ା ଦୌଡ଼ ପାଇଁ
ବାର୍ସିଲୋନାରେ ହାରିଲେ ବି ଯାଏ ଆସେ ନାହିଁ ।

ଆଇସ୍ୟର ଗଙ୍ଗାଧର ତା' ପାଇଁ ସବୁଦା
ଭାରତ କରିବ ସିଏ ସେଥିଁ ତୋଡ଼ା ତୋଡ଼ା ।

ଗାନ୍ଧୀଙ୍କର ରାମରାଜ୍ୟ ତା' ପାଇଁ ସଂଶୟ
ଇତିହାସେ ଖୋଜେ ତାଙ୍କୁ ରାମ ବୋଲି
ତନ୍ନେ ତନ୍ନେ ପ୍ରତିଟି ଅଧ୍ୟାୟ ।

କହି କି ପାରିବ କିଏ
କୃଷ୍ଣ ମୁଖେ, ଯଶୋଦା ପୃଥିବୀ ଦେଖିଛି ?

କହି କି ପାରିବ କିଏ
ଇତିହାସ ମଧ୍ୟେ ସତ୍ୟ ଲୁଚି ଅଛି ?
ଶିଶୁ ପୁଣି କାହିଁକି ବୁଝିବ ବ୍ୟଥା
ସୁଭାଷ ବୋଷର
କାହିଁକି ଜାଣିବ କଥା ବାଜି ରାଉତର ?
କାହିଁକି ହେଜିବ ଗୁଳିମାଡ଼େ ମୃତ ଶହୀଦଙ୍କୁ ଉଷ୍ଣ ମାଟିର ?
ଦେଶ ପାଇଁ ହସି ଫାଶୀ ଖୁଣ୍ଟେ ପ୍ରାଣ ଦେବା
ବେଦନା ଆଦିବାସୀ ଲକ୍ଷ୍ମଣ ନାୟକର
ମଣିଷ ରୂପେ ସେ ଶିଶୁ ଜନ୍ମି ପରେ ହୁଏ
ବଂଶଲାଗି, ଜାତିଲାଗି, ଧର୍ମଲାଗି
ଭିନ୍ନ ରୂପେ ଗଣା,
"କ୍ୱ ଅହଂ"ର ଉତ୍ତର ତାକୁ କରେ ବାଟ ବଣା,
ଜନ ସମୁଦ୍ରର ଅନନ୍ତଶୟନେ ସେ ଦେଖେ
ଖାଦ୍ୟ ନାହିଁ, ବସ୍ତ୍ର ନାହିଁ, ନାହିଁ ବାସଗୃହ,
ସ୍ୱାଗିଆଡ଼େ ଘୁରେ ଖାଲି ପ୍ରଦୂଷଣ ମନ୍ତ୍ର,
ଡାକିଥାନ୍ତା ଜନନୀକୁ ତା'ର
ଯୁଝିବାକୁ, କରିବାକୁ ଅବା ମରିବାକୁ,
ସେ କିନ୍ତୁ ବୁଝୁନି କ'ଣ କରିବ ?
କା ପାଇଁ ମରିବ ?
ବ୍ରିଟିଶ ତ ନାହିଁ ଏ ଦେଶରେ
ଅଛି ଖାଲି ଗରିବୀଟା ରାକ୍ଷସ ରୂପରେ ।

ଗଢ଼ିବାକୁ ନୂତନ ସମାଜ,
ଜାତିଲାଗି, ଧର୍ମଲାଗି, ଆଞ୍ଚଳିକତାରେ,
ଅଥବା ଦୁର୍ନୀତିର ମୁଖାପିନ୍ଧା ଜନ ସମୁଦ୍ରରେ,
ତେଣୁ ସେ ଅଝଟ ଶିଶୁ,
କରି ବି ପାରୁନି, ମରିବି ପାରୁନି
ଭାରତ ଛାଡ଼ ଆନ୍ଦୋଳନର ସ୍ୱର୍ଣ୍ଣଜୟନ୍ତୀରେ ।

---

ତିଳୁପତି ସାହି,
ଛତ୍ରପୁର ।

# ହେ ! ଶହୀଦ ବିଜୟୀ

* ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ

ହେ ବନ୍ଧୁ ଅଗଷ୍ଟ ନଅ
ତୁମେ ନୁହଁ ଖାଲି ଏକ ସ୍ମୃତି
କିମ୍ବା ଇତିହାସ ପୃଷ୍ଠାର ତାରିଖ

ବରଂ ତୁମେ ଏ ଜାତିର ମୁକ୍ତି ତୀର୍ଥେ
ବହ୍ନିମାନ ବିପ୍ଳବର ପ୍ରଦୀପ୍ତ ମୟୂଖ
ଆଉ ଏ ଜାତିର ଅଙ୍କାରିତ ପ୍ରତିଟି ହୃଦୟେ
ତୁମେ ଏକ ଅସ୍ଥିର ଝଲକ୍।

ଆଜି ପୁଣି ବହୁ ବର୍ଷପରେ
ତୁମ ସ୍ମୃତି ପଡ଼ିଗଲେ ମନେ

ମନେ ପଡ଼େ......ଯେଉଁମାନେ ଯୁଗଯୁଗ ଧରି
ଏ ଜାତିର ମୁକ୍ତି ପାଇଁ ପିନ୍ଧି ଥିଲେ ଦାସତ୍ୱ ଓ ଶୃଙ୍ଖଳର ବେଡ଼ି
ଖାଇଥିଲେ ଲାଠି ଆଉ ବନ୍ଧୁକ ପ୍ରହାର
କରିଥିଲେ ରକ୍ତ ଆଉ ଅଶ୍ରୁର ତର୍ପଣ
ଜାଳି ଦେଇ ମୁକ୍ତିର ତରବାମୂଳେ ସଂଗ୍ରାମର ଶିଖା। ବହ୍ନିମାନ
ସେ ଶିଖା ଦେଇଛି ଟେକି
ଏ ଜାତିର ଇତିହାସେ ବିରାଟ ତା' ଦାନ।

ସେଦିନ ବି ପୁଣି.......
ସାବର ମତିର ସନ୍ଥ ଏ ଜାତି ଜନକ
ଏ ଜାତିର ବଡ଼ଦାଣ୍ଡେ ଶୁଣାଇଲା
ବଜ୍ର କଣ୍ଠେ ମୁକ୍ତିର ସଙ୍ଗୀତ
ସେ ସଙ୍ଗୀତ, ସେ ସ୍ୱର ଝଙ୍କୃତ ହେଲା

ବୁକୁ ଚିରି କୋଟି ଜନତାର
ସୃଷ୍ଟିକଲା ନୂଆ ଇତିହାସ ଦୃଢ଼ ସଂକଳ୍ପର
କର ଅବା ମର।

ଆଉ ଯେଉଁମାନେ ଏ ଜାତିର ମୁକ୍ତି ପାଇଁ ଦେଇ ଗଲେ ଶ୍ୱାସ
ସେମାନଙ୍କୁ କାଳ କ'ଣ କରି ପାରେ ଶେଷ ??

ସେମାନେତ ଶହୀଦ ବିଜୟୀ
ଚିର ମୃତ୍ୟୁଞ୍ଜୟୀ

ହେ ! ବନ୍ଧୁ ଅଗଷ୍ଟ ନଅ, ପ୍ରିୟ ବନ୍ଧୁ, ସଖା
ମୁକ୍ତିର ପ୍ରଥମ ପ୍ରଭାତୀ
ଏ ଜାତିର ସଂଗ୍ରାମର, ପ୍ରଜ୍ୱଳିତ ପ୍ରଦୀପର ଅନିର୍ବାଣ ଶିଖା
ତୁମ କୀର୍ତ୍ତି ଇତିହାସେ କାଳ କାଳ ରହିଥିବ ଲେଖା
ତୁମେ ଶହୀଦ ବିଜୟୀ
ଚିର କାଳ ଜୟୀ !!

ଭାରତୀ ମଠ ଲେନ୍,
ପୁରୀ।

# ସେ ଦିନର ସ୍ମୃତି

* ବନପ୍ରଭା ପରିଡ଼ା

ସେ ଦିନ ଯାଇଛି ଭୁଲି
ନାହିଁ ଆଉ ପରାଧୀନ ପକ୍ଷ ତଳେ
ଶତ ଶତ ସନ୍ତୁଳିତ ଆସାର ବିଳାପ,
ନାହିଁ ପୁଣି ସତ୍ୟାଗ୍ରହ କାରାବାସ
କେତେ ଗୁଳି ଲାଠି ମାଡ଼
ହସି ହସି ଫାଶୀ ଖୁଣ୍ଟେ ଝୁଲିବା ମୁହୂର୍ତ୍ତ ।
ଗୋଟେ ପଟେ ବିପ୍ଳବର ଗଣ୍ଡଶିଖା
ଆରପଟେ ଅହିଂସା ଓଁକାର
ଦେଶ ପାଇଁ ଜାତି ପାଇଁ ମିଶି ଯେବେ
ହେଲା ଏକାକାର
ନଥିଲା ଯେ ଧର୍ମ-ବର୍ଣ୍ଣ-ବୟସ ବିଗ୍ଭର
ସେ ମୁହୂର୍ତ୍ତ ଥିଲା ଏକା
ସ୍ୱାଧୀନତା ସ୍ୱାଦୁ ଶୁଙ୍ଖିବାର ।
ମାଟି ପାଇଁ ମା' ପାଇଁ
ଯିଏ ଯେବେ ଦେଲା ଆତ୍ମବଳି
ବିଦେଶୀ ନଇଁଲା ମଥା
ତମସା ଗଉରୀ ତଳୁ
ସୂର୍ଯ୍ୟ ଦୀପ ସମ
ସ୍ୱାଧୀନତା ଉଠିଲା ଉଜ୍ଜ୍ୱଳି ।।
ଚନ୍ଦନ ହଜୁରୀ-ବକ୍ସି ଜଗବନ୍ଧୁ
ଲକ୍ଷ୍ମଣ ନାୟକ
ଦେଶ ପାଇଁ ପ୍ରାଣ ପାତ କଲେ
ଉତ୍କଳର ସୁଯୋଗ୍ୟ ଦାୟାଦ
ନାହା ଫିଟାଇବି ନାହିଁ
ବାଜି ଭାରତର ଦସ୍ତବାଣୀ
ଫିରିଙ୍ଗିର ବନ୍ଧୁକରେ
ତା'ର କେତେ ଲାଲ ହେଲା
ଭରା ନଈ ପାଣି
ସବୁତ ଯାଇଛି ଘଟି ଏ ମାଟିରେ ;
ସମୟର ମହାସ୍ରୋତେ
ଦିନ-ମାସ-ବର୍ଷ ଯାଏ ବିତି
ଆମେତ ସ୍ୱାଧୀନ ଏବେ
କିନ୍ତୁ କାହିଁ ସେ ଅନୁରାଗ ?
ସ୍ୱାଧୀନତା ଆମ ପାଇଁ
ଏବେଖାଲି ସ୍ମୃତି ଆଉ ସ୍ମୃତି ।
ପୁରୁଣା ମେସିନ୍‌ର ମଇଳା ଜମାଟ ପରି
ଏ ମନରେ କେତେ ଯେ କଳଙ୍କି
ଜାତି-ଧର୍ମ-ସମ୍ପ୍ରଦାୟ
ସଂକୀର୍ଣ୍ଣ ଭାବର,
ଏ କାଳିମା ଭେଦ କରି ଯିବା ପାଇଁ
ଏଇ ଯେ ଆସିଛି
ଆମ ଅଗ୍ରସର ବେଳ ।
ଆଜି ଏହି ଅଗଷ୍ଟ ପନ୍ଦରେ
ତିରଙ୍ଗାର ତଳେ
ମନ ଦର୍ପଣରେ ଥରେ
ସମୟର ଆଲୋଡ଼ନ
କଲେ ନିରୀକ୍ଷଣ
ଛାତିର ସ୍ପନ୍ଦନ ନିକ୍ଷେ ବାରି ନେବ
ଭିତରୁ ଆସୁଛି ଧ୍ୱନି
ବନ୍ଦେ ମା'ତରମ୍ ।।

ଗ୍ରାଃ-ଟାର୍ଣ୍ଣିକଣା, ପୋଃଅଃ-କଳପଡ଼ା,
ଭାୟା-ବେଙ୍କଳାର, ଜିଃ-କଟକ ।

# ହେ ମହାନ୍ ଅଗଷ୍ଟ ପନ୍ଦର

* ଶ୍ରୀ ସୁରେନ୍ଦ୍ର ନାୟକ

ହେ ଅଗଷ୍ଟ ପନ୍ଦର, ତୁମକୁ ନମସ୍କାର
ତୁମ ପାଇଁ ଏ ଜାତିର ବୀର
କେତେ ଯେ ଶହୀଦ୍
ଦେଇ ଗଲେ ପ୍ରାଣବଳି
କେତେ ସାହିତ୍ୟିକ ଐତିହାସିକ ।
ରକ୍ତାକ୍ଷରେ ଲେଖିଗଲେ
ତମ ଇତିହାସ ॥

କିନ୍ତୁ............
ତୁମେ ଆଜି ଏଇ ଜାତି ପାଇଁ
ହେଲ କିବା ପ୍ରହସନ
ଏ ପୁଣ୍ୟ ଭୂମିରେ
ତୁମ ଛନ୍ଦ ନୁହେଁ
ଘୃଣ୍ୟବାକ୍ୟପୂର୍ଣ୍ଣ
ଏକ ସମାରୋହ
ତୁମ ପୂତ ନାମ ଗାଇ
ତୁଟିଯାଏ ଅତ୍ୟାଚାର
ବିବାଦ ବିଗ୍ରହ ॥

ଏ ଜାତିଙ୍କ ଆଶାୟୀ ଜନତା
ରହିଛି ତୁମକୁ ଚାହିଁ
ପ୍ରତିଥର ସଙ୍ଘଟିତ କର ନୂଆ ସୃଷ୍ଟିର ବିପ୍ଳବ
ହେ.......ଅଗଷ୍ଟ ପନ୍ଦର
ତୁମେ ବି ଆସିବ ପୁଣି
ଆଉ ଥରେ (ତୁମ)
ଅବାସ୍ତବ ଅସଙ୍ଗତ ମୁଖ ।

ଖୋଲି ଦେଇ
ଭେଦାଲ ଚିନ୍ତାକୁ
ସବୁ ପୂର୍ଣ୍ଣାହୁତି ଦେବ,
ଅଗଣିତ ସର୍ବହରା ପାଇଁ
ଆସିବ ଏଥର ତୁମେ ନୂଆ ଅନୁଭବ
ଆମରି ଭିତରେ ଯେତେ ନବୀନ ଚେତନା
ବାସ୍ତବ କଳ୍ପନା/ରୂପାୟିତ ହେବ ବାରପାର
କୋଟି କୋଟି ମଣିଷର
ଯେନ ତୁମେ ନତ ନମସ୍କାର
ଜାତିର ଜାଗ୍ରତି ପଥେ
ହେ ମହାନ ଅଗଷ୍ଣ ପନ୍ଦର ॥

---

ସମ୍ପାଦକ, ବେଳା,
କାହେରା, କଟଣି, ପୁରୀ ।

# ଘୁମୁସର ରାଜା – ଇଂରେଜ ସଂଘର୍ଷ

* ଶ୍ରୀ ମାଗୁଣି ଦାଶ

ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାର ୧୮୦୩ ମସିହାରେ ଓଡ଼ିଶାକୁ ସମ୍ପୂର୍ଣ୍ଣ ଦଖଲ କରି ନେଇଥିଲେ ମଧ୍ୟ ଏହାର ୩୫ ବର୍ଷ ପୂର୍ବରୁ ଗଞ୍ଜାମ ଓ ଜୟପୁର ଅଞ୍ଚଳ ଇଂରେଜମାନଙ୍କର କରଗତ ହୋଇ ସାରିଥିଲା । ୧୭୬୮ ମସିହାଠାରୁ ୧୮୫୭ ମସିହା ସିପାହୀ ବିଦ୍ରୋହ ପର୍ଯ୍ୟନ୍ତ ପ୍ରାୟ ୯୦ ବର୍ଷ ଧରି ଗଞ୍ଜାମ ଜିଲ୍ଲାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବହୁତ ଥର ବିଦ୍ରୋହ ହୋଇଥିଲା । ଏଥିପାଇଁ ଇଂରେଜ ସରକାର ସବୁବେଳେ ବଡ଼ ଚିନ୍ତାରେ କାଳ ଯାପନ କରୁଥିଲେ ।

ଓଡ଼ିଶାରେ ଜମିଦାରଙ୍କ ସଂଖ୍ୟା ବହୁତ । ଜାତୀୟ ଏକତା ଅଭାବରୁ ରାଜା, ଜମିଦାରମାନେ ସଂଘବଦ୍ଧ ଭାବରେ ବିଭିନ୍ନ ସମୟରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବହୁବାର ଯୁଦ୍ଧ କରିଥିଲେ ମଧ୍ୟ କୃତକାର୍ଯ୍ୟ ହୋଇପାରି ନଥିଲେ । ଓଡ଼ିଆମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯେତେ ଥର ଓ ଯେତେ ପ୍ରକାର ବିଦ୍ରୋହ କରିଛନ୍ତି, ଅନ୍ୟ କୌଣସି ପ୍ରଦେଶ ତୁଳନାରେ ଏହା ନ୍ୟୁନ ନୁହେଁ । ଓଡ଼ିଶାବାସୀ ସହଜରେ ଇଂରେଜମାନଙ୍କ ଅଧୀନତା ସ୍ୱୀକାର କରିନଥିଲେ । ଓଡ଼ିଆ ଜାତି ପକ୍ଷରେ ଏହା ଗର୍ବ ଓ ଗୌରବର ବିଷୟ ଏଥିରେ ସନ୍ଦେହ ନାହିଁ ।

ପାରଳାଖେମୁଣ୍ଡି, ମହୁରୀ ଓ ଘୁମୁସର ରାଜାମାନଙ୍କ ବିଦ୍ରୋହ ବ୍ରିଟିଶ ସରକାରଙ୍କୁ ଅସ୍ଥିର କରି ଦେଇଥିଲା । ସମସ୍ତ ଓ ସଂଖ୍ୟାରେ ଘୁମୁସର ରାଜାଙ୍କ ବିଦ୍ରୋହ ସବୁ ରାଜା, ଜମିଦାରମାନଙ୍କ ବିଦ୍ରୋହ ଅପେକ୍ଷା ବେଶୀ । ଏଥିପାଇଁ ଇଂରେଜ ସରକାରଙ୍କୁ ଘୁମୁସର ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବାକୁ ପଡ଼ିଥିଲା ।

ବିଶେଷତଃ ଘୁମୁସରର ସୀମା ସେତେବେଳର ବଙ୍ଗଳା ସରକାରଙ୍କ ଅଧୀନର ଓଡ଼ିଶା ସହିତ ଲାଗି ରହିଥିବାରୁ ପ୍ରାଦେଶିକ ସରକାରଙ୍କ ସହିତ ଆଲୋଚନା ଓ କାର୍ଯ୍ୟରେ ଅଯଥା ବିଳମ୍ବ ହେତୁ ବିଦ୍ରୋହୀମାନେ ଗୋଟିଏ ପ୍ରଦେଶର ସୀମା ପାର ହୋଇ ଅନ୍ୟ ପ୍ରଦେଶକୁ ଖସିଯାଇ ସେଠାରେ କିଛି ଦିନ ନିରାପଦରେ ରହିବାର ସୁବିଧା ପାଇଯାଉଥିଲେ ।

ଘୁମୁସର ଜମିଦାରୀ ଭିତରେ ଆଦିବାସୀ କନ୍ଧଙ୍କ ସଂଖ୍ୟା ବେଶୀ ଥିବାରୁ ସେମାନଙ୍କୁ ସରକାରଙ୍କ ବିରୁଦ୍ଧରେ ମତାଇବା ସହଜ ଥିବାରୁ ସରକାର ଘୁମୁସର ଅଞ୍ଚଳ ସମ୍ବନ୍ଧେ ବିଶେଷ ଭାବରେ ଚିନ୍ତିତ ଥିଲେ । ଘୁମୁସର ବିଦ୍ରୋହଗୁଡ଼ିକର ପ୍ରଭାବ ଓଡ଼ିଶା ଉପରେ ବହୁବାର ପଡ଼ିଥିଲା । ସେଥିପାଇଁ ସରକାର ଘୁମୁସର ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେଉଥିଲେ ।

୧୭୬୮ ବେଳକୁ ବିଶାଳ ଗଡ଼େ ଖେଦ ଆୟତନ ବିଶିଷ୍ଟ ବିସ୍ତୃତ ଘୁମୁସରର କ୍ଷେତ୍ରଫଳ ୪ ହଜାର ବର୍ଗ ମାଇଲ ଥିଲା । ଏହାର ପୂର୍ବ, ପଶ୍ଚିମ ୮୦ ମାଇଲ ଓ ଦକ୍ଷିଣ–ଉତ୍ତରରେ ୫୦ ମାଇଲ ଥିଲା । ଘୁମୁସରର ଉତ୍ତରକୁ ଦଶପଲ୍ଲା ଗଡ଼ଜାତ ରାଜ୍ୟ, ଉତ୍ତର–ପଶ୍ଚିମକୁ ବଉଦ ଗଡ଼ଜାତ ରାଜ୍ୟ, ପୂର୍ବକୁ ନୟାଗଡ଼ ଗଡ଼ଜାତ, ପଶ୍ଚିମକୁ କନ୍ଧମାଳ, ଦକ୍ଷିଣକୁ ଧରାକୋଟ ଓ ଅସ୍କା, ଦକ୍ଷିଣ–ପୂର୍ବକୁ ଆଠଗଡ଼ ଜମିଦାରୀ ଏବଂ ଦକ୍ଷିଣ–ପଶ୍ଚିମକୁ ସୋରଡ଼ା ଲାଗି ରହିଛି । କୁଲାଡ଼ ଗଡ଼ ଘୁମୁସର ରାଜାଙ୍କ ରାଜଧାନୀ ଥିଲା ।

ଘୁମୁସର ଜମିଦାରୀ ଭିତରେ ବଣ, ଜଙ୍ଗଲ ଓ ପାହାଡ଼ ବେଶୀ । ମାଳ ଅଞ୍ଚଳରେ ବହୁତ କନ୍ଧ ଜାତୀୟ ଲୋକ ବାସ କରନ୍ତି ।

ଘୁମୁସରର ଭଞ୍ଜ ରାଜାମାନେ କୁଲାଡ଼ଗଡ଼, ଦୁର୍ଗା ପ୍ରସାଦ ଗଡ଼ ଓ ଅଣ୍ଟାର ଗଡ଼; ଏ ତିନି ଗଡ଼କୁ ସାମରିକ ଘାଟି ରୂପେ ବ୍ୟବହାର କରୁଥିଲେ । ଘୁମୁସରର ଦୁର୍ଗମ ପର୍ବତମାଳା ଗଡ଼ର ପ୍ରାଚୀର ରୂପେ କାର୍ଯ୍ୟ କରୁଥିଲା । ଘୁମୁସରର ସବୁ ଗଡ଼ ପାହାଡ଼ ଓ ପର୍ବତକୁ ଲାଗି ତିଆରି ହୋଇଥିବାରୁ ଶତ୍ରୁର ଆକ୍ରମଣକୁ ପ୍ରତିହତ କରିବା ପାଇଁ ଅତି ସହଜ ହେଉଥିଲା । ପ୍ରାଚୀନ କାଳର ଯୁଦ୍ଧ ରୀତି ଅନୁସାରେ ଏହି ଗଡ଼ଗୁଡ଼ିକ ନିର୍ମାଣ କରାଯାଇଥିବାରୁ ଆଧୁନିକ ଧରଣର ଯୁଦ୍ଧ ପାଇଁ ସେତେ ଉପଯୋଗୀ ହୋଇପାରୁ ନଥିଲା । ବିଶେଷତଃ କମାଣ ଦାଉ ସମ୍ଭାଳିବା ପାଇଁ ଏହାର ଶକ୍ତି ନଥିଲା ।

୧୭୬୪ ମସିହାରେ ରାଜା କୃଷ୍ଣ ଭଞ୍ଜ ଘୁମୁସରରେ ରାଜା ହୋଇଥିଲେ । ସେ କମ୍ପାନୀ ସରକାରଙ୍କୁ ବାର୍ଷିକ ୩୦ ହଜାର ଟଙ୍କା ପେସ୍କିସ୍ ଦେଉଥିଲେ । ୧୭୭୩ ମସିହାରେ କୃଷ୍ଣ ଭଞ୍ଜଙ୍କର ମୃତ୍ୟୁ ହେବାରୁ ତାଙ୍କର ବଡ଼ ପୁଅ ଲକ୍ଷ୍ମଣ ଭଞ୍ଜ ଓ ସାନ ପୁଅ ବିକ୍ରମ ଭଞ୍ଜଙ୍କ ମଧ୍ୟରେ ରାଜଗାଦି ନେଇ ବିବାଦ ଉପୁଜିଲା ହେଲା ।

ରାଜା କୃଷ୍ଣ ଭଞ୍ଜ ନୟାଗଡ଼ ରାଜ ଜେମାଙ୍କୁ ବିବାହ କଲାବେଳେ ତାଙ୍କ ଔରସ ଜାତ ପୁତ୍ର ଘୁମୁସରରେ ରାଜା ହେବେ ବୋଲି ...

ଶେଷ କରିଥିଲେ । ଏହା ହେଉଛି ଦୁଇ ଭାଇଙ୍କ ମଧ୍ୟରେ ବିବାଦର ମୂଳ କାରଣ । ସେ ଯାହା ହେଉ ଶେଷକୁ ତ୍ରିବିକ୍ରମ ଭଞ୍ଜ ରାଜସ୍ୱ ୨୦ ହଜାର ଟଙ୍କା ବଢ଼ାଇ ବାର୍ଷିକ ୫୦ ହଜାର ଟଙ୍କା ସରକାରଙ୍କୁ ଦେବା ପାଇଁ ପ୍ରତିଶ୍ରୁତି ଦେଇ ଘୁମୁସରରେ ରାଜା ହେଲେ । ଏହା ଛଡ଼ା ସେ ବଡ଼ ଭାଇ ଲକ୍ଷ୍ମଣ ଭଞ୍ଜଙ୍କୁ ଜାଗିର ସ୍ୱରୂପ ନଅ ଖଣ୍ଡି ଗ୍ରାମ ଦେବା ପାଇଁ ସରକାର ନିଷ୍ପତ୍ତି କରିଥିଲେ ମଧ୍ୟ ରାଜା ତ୍ରିବିକ୍ରମ ଭଞ୍ଜ ବଡ଼ ଭାଇଙ୍କୁ ଜାଗିର ଗ୍ରାମ ଦେଲେ ନାହିଁ କି ସରକାରଙ୍କୁ ଦେଇଥିବା ପ୍ରତିଶ୍ରୁତି ପ୍ରକାରେ ବାର୍ଷିକ ୫୦ ହଜାର ଟଙ୍କା ଖଜଣା ଦେଲେ ନାହିଁ । ସେଥିପାଇଁ ୧୭୭୮ ମସିହାରେ ସରକାର ତ୍ରିବିକ୍ରମ ଭଞ୍ଜଙ୍କ ବିରୁଦ୍ଧରେ ସାମରିକ ଅଭିଯାନ ଚଳାଇବା ପାଇଁ ସ୍ଥିର କଲେ । ସେହି ବର୍ଷ ଡିସେମ୍ବର ୧୭ ତାରିଖରେ ରାଜା ତ୍ରିବିକ୍ରମ ଭଞ୍ଜ ବିଷ୍ଣୁଚକ୍ର ଗଡ଼ରେ ଅବସ୍ଥାନ କରୁଥିବା ଖବର ପାଇ ଇଂରେଜ ସରକାର ବିଷ୍ଣୁଚକ୍ର ଗଡ଼ ଉପରେ ଆକ୍ରମଣ କଲେ । ରାଜା ତ୍ରିବିକ୍ରମ ଭଞ୍ଜ ପ୍ରତିରୋଧ କଲେ ମଧ୍ୟ ତାଙ୍କର ପୁରୁଣାକାଳିଆ ଅସ୍ତ୍ରଶସ୍ତ୍ର ଇଂରେଜମାନଙ୍କ ଆଧୁନିକ ଅସ୍ତ୍ରଶସ୍ତ୍ର ଆଗରେ ଅକାମୀ ହୋଇପଡ଼ିଲା । ସେ ଗଡ଼କୁ ରକ୍ଷା କରିନପାରି ନୟାଗଡ଼, ପରେ ଦଶପଲ୍ଲା ଏବଂ ଶେଷରେ ବୌଦ୍ଧର ମର୍ଜାକୁଦରେ ଯାଇ ରହିଲେ ।

ଇଂରେଜ ସରକାର ବଡ଼ ଭାଇ ଲକ୍ଷ୍ମଣ ଭଞ୍ଜଙ୍କୁ ଘୁମୁସରରେ ରାଜା କଲେ । ସେ ବାର୍ଷିକ ଏକ ଲକ୍ଷ ଟଙ୍କା ପେସ୍‌କିସ୍ ଦେବା ପାଇଁ ସମ୍ମତ ହୋଇ ଘୁମୁସରରେ ରାଜା ହେଲେ । ରାଜା ଲକ୍ଷ୍ମଣ ଭଞ୍ଜ ୧୭୮୮ରେ ମୃତ୍ୟୁବରଣ କରିବାରୁ ତାଙ୍କ ପୁତ୍ର ଶ୍ରୀକର ଭଞ୍ଜ ଘୁମୁସରରେ ରାଜା ହେଲେ । ଖଜଣା ଆଦାୟରେ ହେରଫେର୍ ଯୋଗୁଁ ଶ୍ରୀକର ଭଞ୍ଜ ବିରକ୍ତ ହୋଇ ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ରାଜ ଗାଦିରେ ଦେଇ ତୀର୍ଥାଟନରେ ଚାଲିଗଲେ । ଶ୍ରୀକର ଭଞ୍ଜଙ୍କ ଅନୁପସ୍ଥିତିରେ ରାଜା ଧନଞ୍ଜୟ ଭଞ୍ଜ ଇଂରେଜ ସରକାରଙ୍କୁ ଖଜଣା ଠିକ୍ ଭାବେ ଦେଲେ ନାହିଁ । ପ୍ରଜାମାନଙ୍କୁ ଭୀଷଣ କଷ୍ଟ ଦେଲେ । ରାଜ୍ୟରେ ବହୁତ ଅନ୍ୟାୟ, ଅତ୍ୟାଚାର ଓ ଅଶାନ୍ତି ସୃଷ୍ଟି ହେଲା । ରାଜା ଶ୍ରୀକର ଭଞ୍ଜ ତୀର୍ଥାଟନରୁ ଫେରି ପୁନର୍ବାର ରାଜା ହେବାକୁ ମନସ୍ଥ କଲେ । କିନ୍ତୁ ରାଜ ଗାଦି ପାଇଁ ପିତା–ପୁତ୍ର ଉଭୟଙ୍କ ମଧ୍ୟରେ କଳହ ଲାଗିଲା । ଇଂରେଜ ସରକାର ଘୁମୁସର ରାଜ୍ୟକୁ ଦୁଇ ଭାଗ କରି ବାଣ୍ଟି ଦେଲେ । ତଥାପି ଶ୍ରୀକର ଭଞ୍ଜ ନିୟମିତ ଭାବରେ ଖଜଣା ଦେଲେ ନାହିଁ । ସେ ଇଂରେଜ ସରକାରଙ୍କୁ ବହୁତ ହଇରାଣ କଲେ ।

କଲେକ୍ଟର ବ୍ରାଉନ୍ ଶ୍ରୀକର ଭଞ୍ଜଙ୍କଠାରୁ ଖଜଣା ଆଦାୟ କରିବା ପାଇଁ ଚେଷ୍ଟା କରି ବିଫଳ ହେବାରୁ ତାଙ୍କ ବିରୁଦ୍ଧରେ ସୈନ୍ୟ ଚାଳନା କରିବା ପାଇଁ ସ୍ଥିର କଲେ । ୧୮୦୧ ମସିହା ମେ ମାସ ୨ ତାରିଖରେ କ୍ୟାପ୍‌ଟେନ୍ ମାର୍ଲୋ ସାହେବ ସସୈନ୍ୟରେ ଘୁମୁସରରେ ପ୍ରବେଶ କରି ଶ୍ରୀକର ଭଞ୍ଜଙ୍କୁ ଗାଦିଚ୍ୟୁତ କରି ତାଙ୍କୁ ବିଦ୍ରୋହୀ ବୋଲି ଘୋଷଣା କରି, ତାଙ୍କୁ ଧରାଇ ଦେଲେ ୧୦ ହଜାର ଟଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କଲେ ।

କର୍ଣ୍ଣେଲ୍ ମାର୍ଲୋ ଓ କର୍ଣ୍ଣେଲ୍ ସ୍ମିଥ୍‌ଙ୍କ ଅଧିନାୟକତ୍ୱରେ ଦୁଇ ଦଳ ସୈନ୍ୟ ସମ୍ମୁଖାସି ଆକ୍ରମଣ କରି କୁଲାଡ଼ ଗଡ଼କୁ ଆକ୍ରମଣ କଲେ । ରାଜା ଶ୍ରୀକର ଭଞ୍ଜ ସରକାରୀ ସୈନ୍ୟମାନଙ୍କ ମୁକାବିଲା କରିନପାରି ସୈନ୍ୟମାନଙ୍କ ସହ ନିକଟସ୍ଥ ଜଙ୍ଗଲକୁ ପଳାଇ ଯାଇ ଇଂରେଜ ସୈନ୍ୟମାନଙ୍କ ଉପରେ ଆକ୍ରମଣ କରି ଗୁଳି ଚଳାଇଲେ । ଏଥିରେ ବହୁ ସରକାରୀ ସୈନ୍ୟ ହତାହତ ହେଲେ । ନିଜେ କର୍ଣ୍ଣେଲ୍ ସ୍ମିଥ୍‌ଙ୍କ ହାତରେ ଗୁଳି ବାଜି ଜଖମ ହେଲେ ।

କୁଲାଡ଼ ଗଡ଼ ଦଖଲ କରି ସାରିବା ପରେ ଇଂରେଜ ସୈନ୍ୟମାନେ ଦୁର୍ଗାପ୍ରସାଦ ଗଡ଼ ଆକ୍ରମଣ କରି ଦଖଲ କଲେ । ଶ୍ରୀକର ଭଞ୍ଜ ଶେଷକୁ ଘୁମୁସର ଛାଡ଼ି ପୁରୀ ଘୁମୁସର ମଠରେ ଯାଇ ରହିଲେ । ଧନଞ୍ଜୟ ଭଞ୍ଜ କୁଲାଡ଼ ଛାଡ଼ି ଘୁମୁସର ଉଦୟଗିରି ମାଳକୁ ପଳାଇ ଯାଇ ସେଠାରେ ରହିଲେ । ୧୮୩୫ ମସିହାରେ ସେ ସେଠାରେ ଇହଲୀଳା ସମ୍ବରଣ କଲେ । ସରକାର ଘୁମୁସର ଜମିଦାରୀକୁ ଖାସ କରିନେଲେ । ଧନଞ୍ଜୟଙ୍କ ମୃତ୍ୟୁ ପରେ ଘୁମୁସରର ବିପ୍ଳବୀ ବୀର ଦୋହରା ବିଶୋୟୀ ଓ ତାଙ୍କ ପୁତୁରା ଚକ୍ର ବିଶୋୟୀ ଧନଞ୍ଜୟ ଭଞ୍ଜଙ୍କ ପୁତ୍ର ବ୍ରଜରାଜ ଭଞ୍ଜଙ୍କୁ ଘୁମୁସରରେ ରାଜା କରାଇବା ପାଇଁ ନାନା ଗଣ୍ଡଗୋଳ ସୃଷ୍ଟି କଲେ । ଶେଷକୁ କର୍ଣ୍ଣେଲ୍ ରସେଲ୍ ସାହେବ ସ୍ୱତନ୍ତ୍ର କ୍ଷମତା ପାଇ ଘୁମୁସରରେ ପହଞ୍ଚି କୁଲାଡ଼ ଶ୍ରୀଶ୍ରୀନାରାୟଣ ମହାପ୍ରଭୁଙ୍କ ସମ୍ମୁଖରେ ବ୍ରଜରାଜ ଭଞ୍ଜଙ୍କୁ ରାଜା କରିବା ବାହାନା କରି ରାଜ ଗାଦି ଦେଇ ତାଙ୍କୁ ସାଙ୍ଗରେ ନେଇ ବନ୍ଦୀରେ ରଖିଲେ । ଏହି ଛଳନା କେହି ବୁଝିପାରିଲେ ନାହିଁ । ତାପରେ ଗଣ୍ଡଗୋଳ ଆସ୍ତେ ଆସ୍ତେ ନିବୃତ୍ତି ୧୮୬୨ ମସିହାରେ ଘୁମୁସର ଶାନ୍ତ ହେଲା ।

---

ସ୍ୱାଧୀନତା ସଂଗ୍ରାମୀ,
ଭଞ୍ଜନଗର ।

# ଫୁଲବାଣୀ ଜିଲ୍ଲା କୃଷି କାର୍ଯ୍ୟକ୍ରମ

*** ପ୍ରଫୁଲ୍ଲ କୁମାର ମିଶ୍ର**

ଫୁଲବାଣୀ ଜିଲ୍ଲାରେ ଏହି କାର୍ଯ୍ୟକ୍ରମରେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଏକ ଗ୍ରାମାଞ୍ଚଳରେ ବାସ କରୁଥିବା ଗରିବ ଲୋକମାନଙ୍କୁ ବିଭିନ୍ନ ଆୟକାରୀ ତଥା ଧନ୍ଦାମୂଳକ କାର୍ଯ୍ୟରେ ନିୟୋଜିତ କରି ସେମାନଙ୍କୁ ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠାଇବା ପାଇଁ ପ୍ରଥମ ପର୍ଯ୍ୟାୟରେ ତିନୋଟି ଉପଖଣ୍ଡରେ ୮ଟି ବ୍ଲକ୍‌ରେ ୧୯୭୯ ମସିହାରୁ ଆରମ୍ଭ ହୋଇ ୧୯୮୦-୮୧ରୁ ସମଗ୍ର ୧୭ଟି ବ୍ଲକ୍‌କୁ ସମ୍ପ୍ରସାରିତ କରାଯାଇଛି । ଗାଁର ଗରିବ ପରିବାରଙ୍କୁ ଚିହ୍ନଟ କରାଯାଇ ସେହି ପରିବାରର ସଦସ୍ୟମାନଙ୍କୁ ବିଭିନ୍ନ ଅର୍ଥ ଉପାର୍ଜନକ୍ଷମ ଧନ୍ଦା ଚଳାଇବା ପାଇଁ ଆବଶ୍ୟକୀୟ ଅର୍ଥ ଋଣ ତଥା ଅନୁଦାନ ଆକାରେ ଯୋଗାଇ ଦିଆଯାଏ । ହରିଜନ ଓ ଆଦିବାସୀ ପରିବାର ତଥା ମହିଳାମାନଙ୍କୁ ଏଥିରେ ଅଗ୍ରାଧିକାର ଦିଆଯାଏ । ବର୍ତ୍ତମାନ ୧୯୯୬ ସୁଦ୍ଧା ଏହି କାର୍ଯ୍ୟକ୍ରମ ମାଧ୍ୟମରେ ୯,୭୦୦ରୁ ଊର୍ଦ୍ଧ୍ୱ ପରିବାରଙ୍କୁ ସହାୟତା ପ୍ରଦାନ କରାଯାଇଥିବା ବିଷୟ ଏକ ସମୀକ୍ଷାରୁ ଜଣାଯାଇଛି । ଏଥି ମଧ୍ୟରୁ ୩୩,୬୨୮ ଆଦିବାସୀ ଓ ୩୧,୬୯୬ ହରିଜନ ପରିବାର ଉପକୃତ ହୋଇଛନ୍ତି । ଯୁବକ, ଯୁବତୀଙ୍କ ଆତ୍ମ ନିଯୁକ୍ତି ପାଇଁ ତାଲିମ କାର୍ଯ୍ୟକ୍ରମରେ ୬,୯୪୮ ଯୁବକ, ଯୁବତୀଙ୍କୁ ବିଭିନ୍ନ ଧନ୍ଦାମୂଳକ କାର୍ଯ୍ୟରେ ତାଲିମ ପ୍ରଦାନ କରାଯାଇ ସେଥି ମଧ୍ୟରୁ ୫,୫୮୨ ଜଣଙ୍କୁ ଥଇଥାନ କରାଯାଇଛି । କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଆର୍ଥିକ ସହାୟତା ପ୍ରଦାନ କାର୍ଯ୍ୟକ୍ରମରେ ୧୯୮୩-୮୪ ମସିହାରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଜଳସେଚନ, ଭୂ-ଉନ୍ନୟନ ଓ ଉନ୍ନତ ବିହନ ଯୋଗାଣ ମାଧ୍ୟମରେ କୃଷି ଉତ୍ପାଦନ ବୃଦ୍ଧି କରିବା ଦିଗରେ କାର୍ଯ୍ୟ ଆରମ୍ଭ କରାଯାଇଛି । ୧୯୯୬ ମାର୍ଚ୍ଚ ସୁଦ୍ଧା ଏହି ଯୋଜନାରେ ୩୧୨ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ୪୭,୦୦୦ରୁ ଉର୍ଦ୍ଧ୍ୱ ହିତାଧିକାରୀଙ୍କୁ ସହାୟତା ପ୍ରଦାନ କରାଯାଇଛି । ସ୍ୱତନ୍ତ୍ର ଖାଦ୍ୟଶସ୍ୟ ଉତ୍ପାଦନ ଯୋଜନାରେ ଚାଷୀଙ୍କୁ ସେଚ କୂପ ଖନନ ବାବଦରେ ଆଦିବାସୀ ଓ ହରିଜନ ଚାଷୀଙ୍କୁ ୫,୦୦୦ ଓ ଅଣ ଆଦିବାସୀ ହରିଜନ ଚାଷୀଙ୍କୁ ୪,୦୦୦ ଟଙ୍କା ହିସାବରେ ଅନୁଦାନ ପ୍ରଦାନ କରାଯାଇଥିବା ବିଷୟ ଏକ ସମୀକ୍ଷାରୁ ଜଣାପଡ଼ିଛି । ୧୯୯୬ ମସିହା ମାର୍ଚ୍ଚ ସୁଦ୍ଧା ୭୧ଟି ସେଚ କୂପ ବାବଦରେ ୨୮୬ ଲକ୍ଷ ଟଙ୍କା ସହାୟତା ପ୍ରଦାନ କରାଯାଇଥିବା ବିଭାଗୀୟ ସୂତ୍ରରୁ ଜଣାପଡ଼ିଛି । ଏହି ଯୋଜନା ସମଗ୍ର ଜିଲ୍ଲାରେ କାର୍ଯ୍ୟକାରୀ କରାଯିବା ପାଇଁ ବର୍ତ୍ତମାନ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ବୋଲି ଜିଲ୍ଲା ପ୍ରଶାସନ ତରଫରୁ ଜଣାପଡ଼ିଛି । ଗୋଟି ଶ୍ରମିକ ଥଇଥାନ ଯୋଜନାରେ ୧୯୭୮-୭୯ ମସିହାରୁ ଆରମ୍ଭ ହୋଇଛି । ୧୯୯୦-୯୧ ସୁ... ଉକ୍ତ ଯୋଜନାରେ ୯,୬୩୭ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ୨,... ଜଣ ଗୋଟି ଶ୍ରମିକଙ୍କୁ ବିଭିନ୍ନ ଧନ୍ଦା କାର୍ଯ୍ୟକ୍ରମରେ ଥଇ... କରାଯାଇଛି । ଜଳସେଚନର ସୁବିଧା ଓ କୃଷିର ଉନ୍ନତି ନିମ... ହରିଜନ ଓ ଆଦିବାସୀ ପରିବାର କ୍ଷୁଦ୍ର ଓ ନାମମାତ୍ର ଚାଷୀ... ମାଗଣାରେ ସେଚ କୂପ ଯୋଗାଇ ଦିଆଯାଇଛି । ଏ... ୯,୪୦୦ରୁ ଅଧିକ କୂପ ଖନନ କରାଯାଇଛି । ୧୯୯୬ ସୁ... ୮୨୫ଟି କୂପ ଖନନ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ବେଳେ ୧,୦୦... ଅଧିକ କୂପ ଖନନ କରାଯାଇ ରାଜ୍ୟସ୍ତରରେ ଏହି ଜି... ସମ୍ମାନଜନକ ସ୍ଥାନ ହାସଲ କରିଥିବା ଜଣାଯାଇଛି । ମରୁ... ପ୍ରବଣ ଅଞ୍ଚଳ କାର୍ଯ୍ୟକ୍ରମରେ ୧୯୭୪-୭୫ ମସିହାରୁ ଏହି ଜିଲ୍ଲା... ୧୭ଟି ବ୍ଲକ୍‌ରୁ ୧୪ଟି ବ୍ଲକ୍‌ରେ କାର୍ଯ୍ୟକାରୀ ହୋଇ ଅଛି । ୧୯୯୬ ସୁଦ୍ଧା ମୃତ୍ତିକା ସଂରକ୍ଷଣ ବିଭାଗକୁ ଆର୍ଥିକ ଅନୁ... ଦିଆଯାଇ ୨,୪୧,୦୩୧ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇ ୫୧୫ ଗୋଟି ଜ... ଅମଳ ପ୍ରକଳ୍ପ, ୧୩୫ ଉଠା ଜଳସେଚନ ପଏଣ୍ଟ, ୩୬ଟି ... ଜଳସେଚନ ପ୍ରକଳ୍ପ ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମ ହୋଇଛି ।

ଏହା ପରେ ଆଦିବାସୀ ସମନ୍ୱିତ ଉନ୍ନୟନ ସଂସ୍ଥା ଫୁଲବାଣୀର ଏକ ସମୀକ୍ଷାରୁ ଜଣାଯାଏ ଯେ ଏହି ... ତା ୨୩-୨-୧୯୭୯ ରିଖରୁ କାର୍ଯ୍ୟ କରୁଛି । ୧୫୦ ... ଆଦିବାସୀଙ୍କ ଜମିରେ ଉନ୍ନତ ଧରଣର ଗହମ, ଧାନ ... ପ୍ରଦର୍ଶନ କରାଯାଇଛି । ଏ ବାବଦରେ ୧୫,୦୦୦ ... କରାଯାଇଅଛି । ଫଳ ଓ ପନିପରିବା ଚାଷରେ ୩ ଗୋ... ନର୍ସରୀରେ ଚାରା ଉତ୍ପାଦନ କରାଯାଇ ୧୫,୧୧୯ ଫଳ ... ୯୮,୬୭୫ ଚାରା ୯୦୫ ଜଣ ଆଦିବାସୀଙ୍କୁ ବଣ୍ଟନ କରାଯାଇ... ୯୦ ଜଣଙ୍କୁ ମଟର ଓ ପନିପରିବା ବିହନ ବଣ୍ଟନ କରାଯାଇ... ଫଳ ସଂରକ୍ଷଣ ଓ ବିଭିନ୍ନ ପ୍ରକାର ପନିପରିବା ଚାଷ ଏବଂ ... ପାଇଁ ୨୫,୦୦୦ ଟଙ୍କା ବ୍ୟୟ ବରାଦ ବ୍ୟବସ୍ଥା କରାଯାଇଛି । ... ବାବଦରେ ୫୧,୨୦୦ ଟଙ୍କା ଖର୍ଚ୍ଚ ୧୯୯୬ ସୁଦ୍ଧା କରାଯାଇଛି । ... ଜଣ ଆଦିବାସୀଙ୍କୁ ରେଶମ ଚାଷ କାର୍ଯ୍ୟ କରିବା ପାଇଁ ୨୫,୦... ଟଙ୍କା ଅନୁଦାନ ପ୍ରଦାନ କରାଯାଇଛି । ୬ ଗୋଟି ଗ୍ରାମ... ପାନୀୟ ଜଳ ଯୋଗାଣ ପାଇଁ ୩ ଗୋଟି କୂପ ଓ ୩ ଗୋଟି ନ... କୂପ ଖନନ କରାଯାଇଛି । ୩ ଗୋଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ... ଆଦିବାସୀମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ, ନାରୀମାନଙ୍କ ମଧ୍ୟରେ ଚେତ...

କୃଷି ବିଷୟ ଜ୍ଞାନ ଆଲୋଚନା ପାଇଁ ୧୫,୦୦୦ ଟଙ୍କା ପ୍ରଦାନ କରାଯାଇଛି । ସାମଗ୍ରିକ ଆୟ ବୃଦ୍ଧି ନିମନ୍ତେ ୬ ଗୋଟି ମହୁ ଚାଷ କେନ୍ଦ୍ର ଜରିଆରେ ୯୪୧ ଜଣ ଆଦିବାସୀଙ୍କୁ ୧,୮୨ ଗୋଟି ମହୁ ବାକ୍ସ ଯୋଗାଇ ଦିଆଯାଇଛି ।

ସଘନ କଦଳୀ ଚାଷରେ ଆଦିବାସୀମାନଙ୍କ ମଧ୍ୟରେ ଉନ୍ନତ ଧରଣର କଦଳୀ ଚାଷର ବିକାଶ ପାଇଁ ୧୯୯୨ ମସିହାରେ ୬୨,୦୦୦ ଟଙ୍କା ଖର୍ଚ୍ଚ କରାଯାଇଛି । ଜାତୀୟକରଣ ବ୍ୟାଙ୍କ ଜରିଆରେ ଶତକଡ଼ା ୫୦ ଭାଗ ଋଣ ଛାଡ଼ ବାବଦକୁ ଜମା ୪,୦୦,୦୦୦ ଟଙ୍କା ଦିଆଯାଇଛି । ବାଲିଗୁଡ଼ା ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ଦ୍ୱାରା ବାଲିଗୁଡ଼ା ଉପଖଣ୍ଡରେ ଜୁଲାଇ ୧୯୭୯ ମସିହାରେ ଏହି ବିଭାଗଟି ଗଠନ କରାଗଲା । ଏହା ୯ଟି ବ୍ଲକକୁ ନେଇ କାର୍ଯ୍ୟ କରୁଛି । ୯ଟି ବ୍ଲକ୍‌ର ମୋଟ ଲୋକସଂଖ୍ୟା ମଧ୍ୟରୁ ଆଦିବାସୀ ୧,୭୩,୪୫୬ ଜଣ ହରିଜନ ସଂଖ୍ୟା ହେଉଛି ୬୩,୨୭୬ ଜଣ ବୋଲି ଜଣାପଡ଼ିଛି । ଏହି ବିଭାଗର କୃଷି କାର୍ଯ୍ୟକ୍ରମରେ ଓ ଜଳସେଚନରେ ୧୯୯୨ ସୁଦ୍ଧା ୧୮୦ ଏକର କଦଳୀ ଚାଷ, ପନିପରିବା ଓ ଫଳ ଚାଷକୁ ୩,୧୧୦ ଜଣ ଆଦିବାସୀଙ୍କ ବାଡ଼ିବଗିଚାରେ ଲଗାଇବା କାର୍ଯ୍ୟକ୍ରମ । କୃଷି ଭିତ୍ତିକ କାର୍ଯ୍ୟକ୍ରମରେ ଜଳସେଚନ ଉପରେ ଗୁରୁତ୍ୱ ଦିଆଯାଇ ବାଲିଗୁଡ଼ା ଉଦୟଗିରି, ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ୧୧୭ଟି ଜଳ ଅମଳ ପ୍ରକଳ୍ପ ଏବଂ ବିଭାଗୀୟ ଦ୍ୱାରା ୭୯ଟି ଜଳସେଚନ ପ୍ରୋଜେକ୍ଟ ଏବଂ ୩୪୯ଟି ସେଚ କୂପ ଖନନ କରାଯାଇଛି । ୫,୪୧,୨୦୫ ଏକର ଜମିରେ ଜଳସେଚନର ବ୍ୟବସ୍ଥା କରାଯାଇଛି । ଆଦିବାସୀ ଗ୍ରାମମାନଙ୍କରେ ଚାଷ କରିବା ପାଇଁ ଗୋଟିଏ ଲେଖାଏଁ ହଳ ବଳଦ ୫୪ ଜଣଙ୍କୁ ଦିଆଯାଇଛି । ପୋଡୁ ଚାଷ ନିବାରଣରେ ତୁମୁଡ଼ି ବନ୍ଧ ବ୍ଲକ୍‌ର ବେଲଘର ଏବଂ ରାଇକିଆ ବ୍ଲକ୍‌ର ମାଣିକେଶ୍ୱର ଅଞ୍ଚଳରେ ମୋଟ ୩,୬୦୦ ଜଣ ପୋଡୁ ଚାଷୀଙ୍କ ଥଇଥାନ ନିମନ୍ତେ ବ୍ୟବସ୍ଥା କରାଯାଇ ୧୯୯୨ ସୁଦ୍ଧା ୧,୨୫୫ ଜଣ ପୋଡୁ ଚାଷୀଙ୍କୁ ଉଦ୍ୟାନ ବିଭାଗ, ମୃତ୍ତିକା ସଂରକ୍ଷଣ, ଜଙ୍ଗଲ ବିଭାଗ ଓ ଜଳସେଚନ କରିବା ପାଇଁ ୧୯୯୨ ସୁଦ୍ଧା ୧,୯୭,୧୫,୭୨୯ ଟଙ୍କା ଖର୍ଚ୍ଚ କରାଯାଇଛି ବୋଲି ଏକ ସମୀକ୍ଷାରୁ ଜଣାଯାଇଛି । ହରିଜନ ଓ ଆଦିବାସୀ ଉନ୍ନୟନ ଅର୍ଥ ସମବାୟ ନିଗମ ଫୁଲବାଣୀର କାର୍ଯ୍ୟକ୍ରମରେ ୧୯୮୨ରୁ ଜିଲ୍ଲାରେ କାର୍ଯ୍ୟ କରି ଆସୁଛି । ଜଳ ଅମଳ ପ୍ରକଳ୍ପ ଯୋଜନାରେ ୪,୭୮,୦୦୦ ଟଙ୍କା ବ୍ୟୟରେ ୩ ଗୋଟି ପ୍ରକଳ୍ପ ନିର୍ମାଣ କରାଯାଇ ୯୦ ଏକର ଜମିରେ ଫସଲ ରକ୍ଷା କରାଯାଇ ପାରୁଛି । ୨୦,୪୧,୨୦୦ ଟଙ୍କାରେ ୭ ଗୋଟି ଉଠା ଜଳସେଚନ ପଏଣ୍ଟ ସ୍ଥାପନ କରାଯାଇ ୩୬୩ ଜଣ ହରିଜନ ଓ ୭୨ ଜଣ ଆଦିବାସୀ ନାମମାତ୍ର କ୍ଷୁଦ୍ର ଚାଷୀଙ୍କର ୭୩୦ ଏକର ଜମିକୁ ପାଣି ମଡ଼ାଇବା ବ୍ୟବସ୍ଥା କରାଯାଇଛି । ୧,୬୨,୨୦୦ ଟଙ୍କାରେ ୧୫ ଗୋଟି ଡିଜେଲ୍ ପମ୍ପ ସେଟ୍ ୫୪ ଜଣ ହରିଜନ ଚାଷୀଙ୍କର ୭୫ ଏକର ଜମିରେ ପାଣି ମଡ଼ାଇବାର କାର୍ଯ୍ୟ ହୋଇଛି ।

ଏହାଛଡ଼ା ସାମାଜିକ ବନୀକରଣ କାର୍ଯ୍ୟକ୍ରମରେ ୧୯୯୨ ମସିହା ସୁଦ୍ଧା ଗ୍ରାମ୍ୟ ଜଙ୍ଗଲ ୩୨୪ ହେକ୍ଟର, ପୁନଃ ବନୀକରଣ ୫୦ ହେକ୍ଟର, ଲଙ୍କା ପାହାଡ଼ ୧୯୯୧ରେ ୨୫-୫ ହେକ୍ଟର, ଅଣ ଆନୁଷ୍ଠାନିକ ବୃକ୍ଷ ରୋପଣ ୩ ହେକ୍ଟର, ଗ୍ରାମୀଣ ଗରିବମାନଙ୍କ ପାଇଁ ୭ ହେକ୍ଟର, ପତିତ ଜଙ୍ଗଲ ପୁନରୁଦ୍ଧାରରେ ୬୦୦ ହେକ୍ଟର, କ୍ଷେତ କଡ଼େ ଜଙ୍ଗଲ ୪୦୪ ହେକ୍ଟର ହୋଇଥିବା ବେଳେ ୧୯୯୨–୯୩ରେ ଗ୍ରାମ୍ୟ ଜଙ୍ଗଲରେ ୪୦୦ ହେକ୍ଟର ପୁନଃ ବନୀକରଣ, ୧୨୫ ହେକ୍ଟର ଆନୁଷ୍ଠାନିକ ବୃକ୍ଷ ରୋପଣ ୩ ହେକ୍ଟର, ଗରିବ ଭୂମି ହୀନଙ୍କ ପାଇଁ ଜଙ୍ଗଲ ଚାଷ ୪୫ ହେକ୍ଟର, ପତିତ ଜଙ୍ଗଲ ପୁନରୁଦ୍ଧାର ୬୦୦ ହେକ୍ଟର, କ୍ଷେତ କଡ଼େ ଜଙ୍ଗଲ ପାଇଁ ୧୫,୦୦,୦୦୦ ଚାରା ବଣ୍ଟନ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ସମୀକ୍ଷାରୁ ଜଣାଯାଇଛି ବୋଲି ଜିଲ୍ଲା ପ୍ରଶାସନ କାର୍ଯ୍ୟାଳୟରୁ ଜଣାପଡ଼ିଛି । ଏହି ଆଦିବାସୀ ଅଧ୍ୟୁଷିତ ଗରିବ ଚାଷୀଙ୍କର ଉନ୍ନତି ଦିଗରେ ମାଛ ଚାଷ, ଟସର ଚାଷ, ଫଳ ଚାଷକୁ ଜିଲ୍ଲା ପ୍ରଶାସନ ଓ ସରକାରୀ ସ୍ତରରେ ଆଗେଇ ନେଇ ସେମାନଙ୍କର ଆର୍ଥିକ ମାନଦଣ୍ଡକୁ ସୁଦୃଢ଼ କରିବା କାର୍ଯ୍ୟକ୍ରମକୁ ବର୍ତ୍ତମାନର ଜିଲ୍ଲାପାଳ ଶ୍ରୀ ନିତ୍ୟାନନ୍ଦ ପରିଡ଼ା, ଆଇ: ଏ: ଏସ୍:ଙ୍କ ଉଦ୍ୟମ ପ୍ରଶଂସନୀୟ ଅଟେ ଏବଂ ଆର୍ଥିକ ଅନୁଦାନ ସଂସ୍ଥାକାରୀର ଅଧିକାରୀଙ୍କ ଉଦ୍ୟମ ଓ ଉତ୍ସାହରେ ଜିଲ୍ଲାରେ କୃଷି କାର୍ଯ୍ୟକ୍ରମ ଆଗେ ଚାଲୁ । ଏହା ଏକ ଆଦର୍ଶ କୃଷି ଜିଲ୍ଲା ଭାବରେ ଓଡ଼ିଶାର ମାନଚିତ୍ରରେ ରହିବା ପାଇଁ ସରକାରୀ ସ୍ତରରେ କାର୍ଯ୍ୟ ହେଉ । ଏହା ସଙ୍ଗେ ସଙ୍ଗେ ଆଦିବାସୀ ଅଞ୍ଚଳରେ ପ୍ରତ୍ୟେକ ବ୍ୟକ୍ତିର ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ କ'ଣ ଦରକାର ତାହା ଜିଲ୍ଲା ସ୍ତରରେ ଆଗ ସ୍ଥିର କରାଯାଉ । ଆଦିବାସୀ ଚାଷୀଙ୍କ ଉନ୍ନତି ନିମନ୍ତେ ବୈଜ୍ଞାନିକ ପଦ୍ଧତିରେ ଓ ବ୍ୟବସାୟିକ ଲକ୍ଷ୍ୟ ରଖି ବୃକ୍ଷ ରୋପଣ, ଉଦ୍ୟାନ କାର୍ଯ୍ୟକ୍ରମ, ପନିପରିବା ଚାଷ, ମାଛ ଚାଷ, ଅନ୍ୟାନ୍ୟ ଚାଷ କରିବାକୁ ପଡ଼ିବ । ପ୍ରତ୍ୟେକ ଚାଷୀ ଯାହା କରିବାକୁ ଆଗ୍ରହ ପ୍ରକାଶ କରିବା ଚାହିଁବେ, ସେହି ଅନୁସାରେ ଜ୍ଞାନ କୌଶଳ ଓ ସରକାରୀ ସାହାଯ୍ୟ ଜିଲ୍ଲା ପ୍ରଶାସନଙ୍କ ଦୃଷ୍ଟି ଦେଇ କାର୍ଯ୍ୟ କରିବାକୁ ହେବ । ଆଦିବାସୀ ଜିଲ୍ଲାଗୁଡ଼ିକରେ ଚାଷୀଙ୍କ ପାଇଁ ଜଳସେଚନ, ଜଳ ଅମଳ ପ୍ରକଳ୍ପ, ପତିତ ଜମି ଉଦ୍ଧାର, ଫଳ ଓ ପନିପରିବା ଏବଂ ମୃତ୍ତିକା ସଂରକ୍ଷଣକୁ ସର୍ବାଧିକ ଗୁରୁତ୍ୱ ଦେବାକୁ ପଡ଼ିବ ଏବଂ ସ୍ୱଳ୍ପକାଳୀନ ଭିତ୍ତିରେ କୃଷି କାର୍ଯ୍ୟ, ମୃତ୍ତିକା କ୍ଷୟକୁ ଅବରୋଧ ପାଇଁ କାର୍ଯ୍ୟ ଚାଲୁ ରଖିବା ଆବଶ୍ୟକ । ଜିଲ୍ଲାରେ ଆଦିବାସୀ ଚାଷୀଙ୍କ ନାମରେ ଆସୁଥିବା ମାଗଣା ବିହନ, ଔଷଧକୁ କୃଷି ବିଭାଗ ବାଟମାରଣା କରୁଥିବାକୁ ବନ୍ଦ କରିବା ଏବଂ ଜିଲ୍ଲାର କୃଷି କାର୍ଯ୍ୟକ୍ରମରେ ଉପ କୃଷି ନିର୍ଦ୍ଦେଶକମାନେ ଚାଷୀଙ୍କ କାର୍ଯ୍ୟରେ ଅବହେଳା କଲେ ସରକାର ସେମାନଙ୍କୁ ଦୃଢ଼ ହସ୍ତରେ ଦମନ କରିବା । ଏହାଛଡ଼ା ବାଲିଗୁଡ଼ା ଆଇ ଟି: ଡି: ଏକୁ ସ୍ୱତନ୍ତ୍ର କେନ୍ଦ୍ରୀୟ ଅନୁଦାନରୁ ଆଦିବାସୀମାନଙ୍କର ସ୍ଥାନୀୟ ଅଭାବ ଅସୁବିଧାକୁ ଦୃଷ୍ଟିରେ ରଖି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟଗୁଡ଼ିକ କାର୍ଯ୍ୟକାରୀ କରାଯାଉଛି । ୧୯୯୨ ସୁଦ୍ଧା ମିଳିଥିବା ମୋଟ ୬,୮୧,୪୭,୧୯୮ ଟଙ୍କାରୁ ୬୪,୧୨,୩୪,୫୦୧ ଟଙ୍କା ଖର୍ଚ୍ଚ କରାଯାଇଥିଲା ମାର୍ଚ୍ଚ ସୁଦ୍ଧା । ପାରିବାରିକ ଆର୍ଥିକ ବିକାଶ କାର୍ଯ୍ୟକ୍ରମରେ ମୋଟ ୩,୨୧,୫୪,୮୯୬ ଟଙ୍କା, ସାମୂହିକ ବିକାଶ କାର୍ଯ୍ୟକ୍ରମରେ ୩,୧୯,୬୮,୫୫୬ ଟଙ୍କା ଖର୍ଚ୍ଚ ହୋଇଛି । ରାସ୍ତାଘାଟରେ ୧୧୯ଟି ରାସ୍ତାର ମରାମତି ଏବଂ ୧୧୪ଟି ଛୋଟ ସେତୁ ନିର୍ମାଣ କରାଯାଇ ଯାତାୟତର ସୁବିଧା କରାଯାଇଥିବା ବିଷୟ ଏକ ସମୀକ୍ଷାରୁ ଜଣାଯାଇଛି ।

ଶିକ୍ଷା କାର୍ଯ୍ୟକ୍ରମରେ ପ୍ରାଥମିକ ଶିକ୍ଷା ଉପରେ ପ୍ରତି ପଞ୍ଚାୟତରେ ଆଦିବାସୀ ଛାତ୍ରାବାସର ସୁବିଧା, ଆଦିବାସୀ ଅଞ୍ଚଳରେ ୯୯ଟି ଗ୍ରାମ ପଞ୍ଚାୟତରେ ୯୯ଟି ଛାତ୍ରାବାସ ନିର୍ମାଣ ପାଇଁ ଲକ୍ଷ୍ୟ ଥିବାବେଳେ ୧୯୯୨ ମାର୍ଚ୍ଚ ସୁଦ୍ଧା ୯୩ଟି ଛାତ୍ରାବାସରେ ଛାତ୍ରଛାତ୍ରୀମାନେ ରହି ଅଧ୍ୟୟନ କରୁଛନ୍ତି । ଏହାଛଡ଼ା ୯ଟି ହାଇସ୍କୁଲ, ୫ଟି ଆଶ୍ରମ ସ୍କୁଲ, ୫ଟି ଆଦିବାସୀ ସେବାଶ୍ରମରେ ପିଲାମାନଙ୍କର ରହିବାର ସୁବିଧା କରାଯାଇ ଶିକ୍ଷାଦାନ ସୁବିଧା କରାଯାଇଛି ବୋଲି ଏକ ଉପଖଣ୍ଡ ସମୀକ୍ଷାରୁ ଜଣାଯାଇଛି । ବାଲିଗୁଡ଼ା ଉପଖଣ୍ଡରେ ଆଦିବାସୀ କୃଷୀ ଉତ୍ସାହିତ କରିବା ଦିଗରେ ଆଇ. ଟି. ଡି. ଏ. ସଂସ୍ଥା ପ୍ରଥମ ସ୍ଥାନ ଅଧିକାର କରିଛି ଏବଂ ଏଥିରେ ବାଲିଗୁଡ଼ା ବି. ଡି. ଓ. ଶ୍ରୀ ପ୍ରମୋଦ କୁମାର ପଣ୍ଡା, ଦାରିଙ୍ଗିବାଡ଼ି ବି. ଡି. ଓ. ଶ୍ରୀ ବିପିନ ବିହା... ପ୍ରଧାନ, ଉଦ୍ୟାନବିତ୍ ଶ୍ରୀ ସୁରେନ୍ଦ୍ର କୁମାର ମହାପାତ୍ର କୃଷ... ଉତ୍ସାହିତ କରାଇ ଯେଉଁ ପନିପରିବା ଓ କଦଳୀ ଚାଷ କରାଉଛି ତାହା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ସେହିପରି ଯଦି ଚାଷ ପ୍ର... ସରକାରୀ କର୍ମଚାରୀମାନେ ଆଗ୍ରହ ହୋଇ ଜିଲ୍ଲାରେ କା... କରିବେ, ତାହା ହେଲେ ଏହି ଫୁଲବାଣୀ ଜିଲ୍ଲା ଦିନେ ଓଡ଼ି... ମାନଚିତ୍ରରେ କୃଷି ଆଦର୍ଶ ଜିଲ୍ଲା ଭାବରେ ପରିଗଣିତ ହେ... ପାରିବ ।

ସାପାହିକ,
ବ୍ରହ୍ମପୁର-୩ ।




ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଘଡ଼େଇ ପ୍ରାକ୍ ବିଦ୍ୟାଳୟ ୟୁନିଟ୍ ଏବଂ ଡି. ଇଡ୍. (ଏଚ୍. ଆଇ.) ପାଠ୍ୟକ୍ରମ ୧୯୯୩-୯୪କୁ ଉଦ୍‌ଘାଟନ କରୁଛନ୍ତି ।

# ଓଡ଼ିଶାରେ ଜିଲ୍ଲା ଗଠନ ଓ ପୁନର୍ଗଠନର ଅତୀତ ଓ ବର୍ତ୍ତମାନ



* ଶ୍ରୀ ସୁରେନ୍ଦ୍ରନାଥ ନାୟକ

## ଉପକ୍ରମଣିକା:

ଉଡ୍ର ଶବ୍ଦରୁ ଓଡ଼ିଶା ହୋଇଛି ବୋଲି ଐତିହାସିକ ଓ ଭାଷାବିତ୍‌ମାନଙ୍କ ମତ । ଓଡ଼ିଶାର ଦୀର୍ଘ ଇତିହାସକୁ ସମୟ ଭିତ୍ତିରେ ସାତ ଭାଗରେ ବିଭକ୍ତ କରାଯାଇପାରେ ଯଥା : ପୁରାତନ ବା ପୌରାଣିକ ଯୁଗ, ପ୍ରାଗ୍‌–ଐତିହାସିକ ଯୁଗ (ଖାରବେଳ), ହିନ୍ଦୁ ରାଜପୁତ୍ ଶାସନ (ଖ୍ରୀ: ୧୫୬୮ ପର୍ଯ୍ୟନ୍ତ), ପଠାଣ ଓ ମୋଗଲ ଶାସନ (୧୫୬୮–୧୭୫୧), ମରହଟ୍ଟା ଶାସନ (୧୭୫୧–୧୮୦୩), ବ୍ରିଟିଶ୍ ଶାସନ (୧୮୦୩–୧୯୪୭) ଆଧୁନିକ ଯୁଗ (୧୯୪୭–୧୯୯୭) । ଓଡ଼ିଶାର ପ୍ରଥମ ଓ ସର୍ବଶ୍ରେଷ୍ଠ ଇତିହାସ ପୁରୁଷ ପ୍ରବଳ ପ୍ରତାପୀ କଳିଙ୍ଗ ସମ୍ରାଟ ମହାମେଘବାହନ ଐର ଖାରବେଳ ବାହୁ ବଳରେ ଖ୍ରୀ: ପୂ: ପ୍ରଥମ ଶତାବ୍ଦୀର ପୂର୍ବୋଭାଗରେ ଦକ୍ଷିଣରେ ସମୁଦ୍ରଠାରୁ ଉତ୍ତରରେ ମଥୁରା–ରାଜଗୃହ ପର୍ଯ୍ୟନ୍ତ ତାଙ୍କ ସାମ୍ରାଜ୍ୟର ସୀମା ବିସ୍ତାର କରିଥିଲେ । ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶୀୟ ରାଜାମାନେ ଓଡ଼ିଶାର ସୀମାକୁ ଗଙ୍ଗାଠାରୁ ଗୋଦାବରୀ ମଧ୍ୟରେ ସୀମିତ ରଖିପାରିଥିଲେ । ସୂର୍ଯ୍ୟବଂଶୀୟ ସମ୍ରାଟ କପିଳେନ୍ଦ୍ରଦେବ (୧୪୩୫–୧୪୬୮) ଉତ୍ତରରେ ବଙ୍ଗ ସୁଲତାନ ଓ ଦକ୍ଷିଣରେ ରେଡ଼ି ତଥା ବାହମନିର ସୁଲତାନ୍‌ଙ୍କୁ ବାରମ୍ବାର ପରାସ୍ତ କରି ଓଡ଼ିଶା ରାଜ୍ୟକୁ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ ।

ଆଜିର ଓଡ଼ିଶା ଦକ୍ଷିଣରେ କଳିଙ୍ଗ ପଶ୍ଚିମରେ କୋଶଳ ଓ ମଧ୍ୟଭାଗ ସମତଳ ଅଞ୍ଚଳରେ ଉତ୍କଳର ଅଂଶ ବିଶେଷକୁ ନେଇ ପୁରାଣ ଓ ଇତିହାସରେ ସ୍ଥାନ ପାଇଥିଲା । କପିଳେନ୍ଦ୍ରଦେବ ହେଉଛନ୍ତି ପ୍ରଥମ ରାଜା ଯେ ଅଭିଷେକ ହେବା ପରେ ପରେ ୧୪୩୬ ମସିହାରେ ନିଜକୁ ଓଡ଼ିଶାର ସମ୍ରାଟ ବୋଲି ଓଡ଼ିଆ ଭାଷାରେ ରାଜପତ୍ର ଘୋଷଣା କଲେ । ତାଙ୍କର ସମସାମୟିକ କବି ଶୂଦ୍ରମୁନି ସାରଳା ଦାସଙ୍କ ମହାଭାରତ କାବ୍ୟରେ "ଓଡ଼ିଶା ରାଜ୍ଯ"ର ଉଲ୍ଲେଖ ଅଛି । ସୂର୍ଯ୍ୟବଂଶୀ ରାଜାମାନଙ୍କ ଅମଳରେ ମଧ୍ୟାହ୍ନରେ ଉପନୀତ ହୋଇଥିବା ଓଡ଼ିଶାର ଗୌରବ ରବି ୧୫୬୮ରେ ଗଜପତି ମୁକୁନ୍ଦ ଦେବଙ୍କ ମୃତ୍ୟୁଠାରୁ କ୍ରମେ ଅସ୍ତମିତ ହେବାକୁ ଲାଗିଲେ । ଏହା ପରେ ଉତ୍ତରରେ ବଙ୍ଗଳାର ପଠାଣ ନବାବ୍ ଓଡ଼ିଶା ଅଧିକାର କଲାବେଳକୁ ଗୋଲକୁଣ୍ଡାର ସୁଲତାନ୍ ତଥା ହାଇଦ୍ରାବାଦର ନିଜାମମାନେ ଯଥାକ୍ରମେ ଦକ୍ଷିଣ ଓଡ଼ିଶା ଅଧିକାର କଲେ । କାଳକ୍ରମେ ମୋଗଲ ବାଦଶାହ ଆକବର ଓଡ଼ିଶାକୁ ମୋଗଲ ଶାସନ ଅଧୀନକୁ ନେଲେ । ଓଡ଼ିଶାରେ ଦୀର୍ଘ ୨୦୦ ବର୍ଷ ଧରି ମୋଗଲ ଶାସନ ଚାଲିଲା । ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇଯିବା ପରେ ୧୭୫୧ ଠାରୁ ୧୮୦୩ ପର୍ଯ୍ୟନ୍ତ ଓଡ଼ିଶାରେ ମରହଟ୍ଟା ରାଜତ୍ୱ ଚାଲିଲା ।

## ବ୍ରିଟିଶ୍ ଆଗମନ ପୂର୍ବରୁ ରାଜସ୍ୱ ଶାସନ :

ମୁକୁନ୍ଦ ଦେବଙ୍କ ପର୍ଯ୍ୟନ୍ତ ହିନ୍ଦୁରାଜାମାନେ ରାଜସ୍ୱ ପ୍ରଶାସନକୁ ଯଥାକ୍ରମେ ମଣ୍ଡଳ, ଖଣ୍ଡ, ଉପଖଣ୍ଡ, ଗ୍ରାମରେ ବିଭକ୍ତ କରିଥିଲେ । ମୋଗଲମାନେ ଜିଲ୍ଲାକୁ ସରକାର କହୁଥିଲେ । ପ୍ରତ୍ୟେକ ସରକାର ଅଧୀନରେ ପ୍ରଗଣା, ତାଲୁକ ଓ ଗ୍ରାମମାନ କାର୍ଯ୍ୟକରୁଥିଲା । ମରହଟ୍ଟାମାନେ ମୋଗଲମାନଙ୍କ ପ୍ରଶାସନ ନୀତିରେ ସାମାନ୍ୟ ପରିବର୍ତ୍ତନ କରି ପ୍ରଗଣା, ଜିଲ୍ଲା, ମାହାଲ, ତାଲୁକମାନ ସୃଷ୍ଟି କରିଥିଲେ । ଉଭୟ ମୋଗଲ ଓ ମରହଟ୍ଟାମାନେ ଓଡ଼ିଶାରେ ପ୍ରାୟ ଔପନିବେଶିକ ଶାସନ ଚଳାଉଥିଲେ । ସେମାନେ କେବଳ ରାଜସ୍ୱ ଆଦାୟରେ ସନ୍ତୁଷ୍ଟ ନଥିଲେ । ସୁବର୍ଣ୍ଣରେଖାଠାରୁ ମହାନଦୀ ଉପତ୍ୟକା ପର୍ଯ୍ୟନ୍ତ ଉର୍ବର ସମତଳ ଅଞ୍ଚଳରେ ପ୍ରତ୍ୟକ୍ଷ ଶାସନ ଜାହିର ରଖି ଏହି ଭୂଖଣ୍ଡକୁ ମୋଗଲବନ୍ଦୀ ଓ ପାହାଡ଼ିଆ ଦେଶୀୟ ରାଜ୍ୟଗୁଡ଼ିକୁ ଗଡଜାତ କହୁଥିଲେ । ଦେଶୀୟ ରାଜ୍ୟମାନଙ୍କର ନିର୍ଦ୍ଦିଷ୍ଟ ସଲାମି ବା ପେଶ୍‌କିସ୍ ଧାର୍ଯ୍ୟ ହେଉଥିଲା । ଗଡଜାତ ରାଜାମାନେ ସେମାନଙ୍କ ରାଜ୍ୟରେ ବସ୍ତୁତଃ ସ୍ୱାଧୀନ୍ ଶାସନ ଚଳାଉଥିଲେ । ଖଜଣା ଆଦାୟ ତଥା ଉନ୍ନୟନ କାମ ପାଇଁ ଗ୍ରାମଠାରୁ ଆରମ୍ଭ କରି ସର୍ବୋଚ୍ଚ ରାଜ କର୍ମଚାରୀମାନେ ଯଥାକ୍ରମେ ନାୟକ, ଦଳବେହେରା, ଚୌଧୁରୀ, ସରବରାକାର, ମକଦମ, ଗୌନ୍ତିଆ, ସୁବାଦାର, ମଖଜଦାର, ଦେୱାନ ଇତ୍ୟାଦି ଭାବେ ନିଯୁକ୍ତ ହେଉଥିଲେ । ଅଧିକାଂଶ ରାଜ କର୍ମଚାରୀମାନେ ସେମାନଙ୍କ ପାରିଶ୍ରମିକ ଭାବେ ଜମିମାନ ଜାଗିରି ପାଇବା ସଙ୍ଗେ ସଙ୍ଗେ କିଛି କିଛି ନଗଦ ଅର୍ଥ ମଧ୍ୟ ପାଉଥିଲେ ।

## ବ୍ରିଟିଶ୍‌ମାନଙ୍କ ଅଭ୍ୟୁଦୟ :

ଭାରତରେ ବ୍ରିଟିଶ୍ ଶକ୍ତି ଅଭ୍ୟୁତ୍ଥାନର ପ୍ରାଣକେନ୍ଦ୍ର ଯଥାକ୍ରମେ ବଙ୍ଗଳାର କଲିକତା ଓ ମାଡ୍ରାଜର ମଧ୍ୟଭାଗରେ ଓଡ଼ିଶା ଅବସ୍ଥିତ

ଥିବାରୁ ଉକ୍ତ କ୍ଷମତା ଉଭୟ କେନ୍ଦ୍ର ସହିତ ସହଜ ସମନ୍ୱୟ ରକ୍ଷା କରିବା ପାଇଁ ଓଡ଼ିଶା ରାଜ୍ୟକୁ ଅକ୍ତିଆର କରିବା ସେମାନଙ୍କ ପକ୍ଷରେ ନିହାତି ଆବଶ୍ୟକ ହେଉଥିଲା । ୧୭୫୭ରେ ପଲାସୀ ଯୁଦ୍ଧ ବେଳେ ଲର୍ଡ଼ କ୍ଲାଇଭ୍ ଏହି ଆବଶ୍ୟକତା ଭଲ ଭାବରେ ଉପଲବ୍ଧି କରି ପାରିଥିଲେ ମଧ୍ୟ ଓଡ଼ିଶା ଅଧିକାର ପାଇଁ ବ୍ରିଟିଶ୍‌ମାନେ ସହଜ ବାଟ ପାଉନଥିଲେ । ୧୭୯୦ରେ ଟିପୁ ସୁଲତାନ୍‌ଙ୍କ ସହ ୩ୟ ମହିଶୂର ଯୁଦ୍ଧ ସମୟରେ ବ୍ରିଟିଶ୍‌ମାନଙ୍କ ପାଇଁ ଏହି ଆବଶ୍ୟକତା ଆହୁରି ଅପରିହାର୍ଯ୍ୟ ହୋଇପଡ଼ିଲା । ଓଡ଼ିଶା ଭିତର ଦେଇ କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ବ୍ରିଟିଶ୍ ସୈନ୍ୟ ଓ କମାଣ ନେବା ଆଣିବା ନିମନ୍ତେ ମରହଟ୍ଟାମାନଙ୍କ ଅନୁମତି ପାଇଁ ଇଂରେଜମାନଙ୍କୁ ପ୍ରଚୁର ଅର୍ଥ ଦେବାକୁ ପଡୁଥିଲା । ଦ୍ୱିତୀୟ ମରହଟ୍ଟା ସମୟରେ ଇଂରେଜମାନଙ୍କ ଦ୍ୱାରା ପରାସ୍ତ ହୋଇ ନାଗପୁରରେ ନାମକୁ ମାତ୍ର ମରହଟ୍ଟା ଶାସକ ପେଶଓ୍ୱା ରଘୁଜୀ ଭୋନ୍‌ସଲା ଇଂରେଜମାନଙ୍କ ସହ ୧୮୦୩ରେ ଯେଉଁ ଅପମାନଜନକ "ଦେଓଗାଁ ସନ୍ଧି" ସ୍ୱାକ୍ଷର କଲେ ତଦ୍ୱାରା ଚିରଦିନ ପାଇଁ ଓଡ଼ିଶାରୁ ମରହଟ୍ଟା ଶାସନର ଅବସାନ ଘଟିଲା ଓ ଓଡ଼ିଶାରେ ଇଂରେଜ ଶାସନର ଭିତ୍ତି ସ୍ଥାପନ ହେଲା । ସନ୍ଧି ଅନୁସାରେ ଇଂରେଜମାନେ ଉପକୂଳବର୍ତ୍ତୀ କଟକ, ପୁରୀ ଓ ବାଲେଶ୍ୱର, କଟକ ପ୍ରଦେଶ (Province) ପାଇଲେ । ଏହିଠାରୁ ଭାଷା, ସଂସ୍କୃତି ଓ ଶିକ୍ଷା କ୍ଷେତ୍ରରେ ଓଡ଼ିଆ ଜାତିର ଦୁର୍ଦ୍ଦଶା ଆରମ୍ଭ ହେଲା ।

## ବ୍ରିଟିଶ୍ ଆଗମନରେ ଓଡ଼ିଆମାନଙ୍କର ଜାତୀୟ କରଣ :

ଦୀର୍ଘ ୫୦ ବର୍ଷ ଧରି ଓଡ଼ିଶା ଅଧିକାରର ଅଭିଳାଷ ଓ ପ୍ରଚେଷ୍ଟା ସଫଳ ହୋଇପାରି ନ ଥିବାରୁ ଇଂରେଜମାନେ ୧୮୦୩ରେ ଓଡ଼ିଶା ବିଜୟ ପାଇଁ ଯଥାକ୍ରମେ ଦକ୍ଷିଣ, ଉତ୍ତର ଓ ପଶ୍ଚିମରୁ ତ୍ରିମୁଖୀ ଅଭିଯାନ ଚଳାଇଲେ । ମରହଟ୍ଟା ବର୍ଗୀମାନେ ପ୍ରଜାପୀଡ଼କ ଥିବାରୁ ଓଡ଼ିଶାର ରାଜା ଜମିଦାରମାନେ ବ୍ରିଟିଶ୍ ବିରୋଧରେ ସେମାନଙ୍କୁ ସାହାଯ୍ୟ କରିବାକୁ କୁଣ୍ଠାବୋଧ କରୁଥିଲେ । ଖୋର୍ଦ୍ଧା ରାଜାଙ୍କର ମନ୍ତ୍ରୀ ଜୟୀ ରାଜଗୁରୁ ମରହଟ୍ଟାମାନଙ୍କୁ ସାହାଯ୍ୟ କରି ଇଂରେଜମାନଙ୍କୁ ଓଡ଼ିଶାରୁ ବିତାଡ଼ିତ କରିବାକୁ ମତ ଦେଇଥିବା ବେଳେ ଖୋର୍ଦ୍ଧା ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ଭିନ୍ନ ମତ ପୋଷଣ କରିଥିଲେ । ଫଳରେ ୧୮୦୩ ସେପ୍ଟେମ୍ବରରୁ ଅକ୍ଟୋବର ଏକ ମାସ ମଧ୍ୟରେ ଇଂରେଜମାନଙ୍କର 'ଓଡ଼ିଶା ଅଧିକାର' ସମ୍ପୂର୍ଣ୍ଣ ହୋଇଥିଲା । ଇଂରେଜମାନେ ଅତ୍ୟଧିକ କର ଧାର୍ଯ୍ୟ ଓ ଖଜଣା ଅସୁଲ କରିବା, ବଙ୍ଗାଳୀ ଅଫିସରମାନଙ୍କ ଦ୍ୱାରା ଉତ୍ପୀଡ଼ିତ ଓ ଅତିଷ୍ଠ ହେବା ଦ୍ୱାରା ବହୁ ରାଜ୍ୟ ଜମିଦାର ତଥା ଜମି ମାଲିକମାନଙ୍କର ଜମିଦାରୀ ଓ ଜମିଜମା କଲିକତାଠାରେ ନିଲାମ ହୋଇଗଲା । ୧୮୦୩ରେ ଖୋର୍ଦ୍ଧା ରାଜ୍ୟ ପ୍ରଥମେ ଖାସ୍ ହୋଇଗଲା । ମନ୍ତ୍ରୀ ଜୟୀ ରାଜଗୁରୁ ପିପିଲିଠାରେ ଇଂରେଜମାନଙ୍କ ସହ ସମ୍ମୁଖ ଲଢ଼େଇରେ ବନ୍ଦୀ ହେଲେ । ମାତ୍ର ଖୋର୍ଦ୍ଧା ରାଜା ଇଂରେଜ ସରକାରଙ୍କୁ ବରଖାସ୍ତ କରି ବିଦ୍ରୋହ ପାଇଁ ଜୟୀ ରାଜଗୁରୁଙ୍କୁ ଦାୟୀ କରିବାରେ ତାଙ୍କୁ ୧୮୦୬ରେ ଫାଶୀ ଦିଆଗଲା । ଅବଶ୍ୟ ପରେ ଇଂରେଜମାନେ ରାଜାଙ୍କୁ ମଧ୍ୟ ବନ୍ଦୀ କରି 'କଳାପାଣି ପଠାଇ ନିର୍ବାସନ ଦଣ୍ଡଦେଲେ ।



୧୮୦୩ରେ ଇଂରେଜମାନେ ବିନା ବାଧାରେ ଓଡ଼ିଶା ଅଧିକାର କରିବା ଯେତେ ସହଜ ସାପେକ୍ଷ ହୋଇଥିଲେ ମଧ୍ୟ ଅନେକ [illegible] ଧରି ଓଡ଼ିଶାରେ ଶାନ୍ତିରେ ସେମାନଙ୍କ ଆସ୍ଥାନ ଜମାଇ ପାରି ନ ଥିଲେ । ପ୍ରଥମାବସ୍ଥାରେ ଇଂରେଜମାନଙ୍କ ପ୍ରବେଶ ପଥରେ ବାଧା ଦେଇ ଯେଉଁ କେତେକ ଓଡ଼ିଆ ରାଜା, ଜମିଦାର, ସର୍ଦ୍ଦାର ଇଂରେଜମାନଙ୍କ ସହ ବୀରତ୍ୱର ସହ ଯୁଦ୍ଧ କରିଥିଲେ, ସେମାନଙ୍କ ମଧ୍ୟରେ ପାରଳାଖେମୁଣ୍ଡି ରାଜା ନାରାୟଣ ଦେବ, ଜୟୀ ରାଜଗୁରୁ, ଘୁମୁସର ରାଜା ଧନଞ୍ଜୟ ଭଞ୍ଜ, ପୋଡ଼ାହାଟ ରାଜା ଅର୍ଜୁନ ସିଂହ, ବୀର ସୁରେନ୍ଦ୍ର ସାଏ, ଅନୁଗୁଳ ରାଜା ସୋମନାଥ ସିଂହ, କନିକା ରାଜା, କୁଜଙ୍ଗ ରାଜା, ବାଙ୍କୀ ରାଜା ବକ୍ସି ଜଗବନ୍ଧୁ, କନ୍ଧ ସର୍ଦ୍ଦାର ଦୋହାରା ବିଶୋଇ, ଚକ୍ର ବିଶୋଇ, ପାଇକ ନେତା କୃଷ୍ଣଚନ୍ଦ୍ର ପାଟଶାଣୀ, ଡାପଙ୍ଗ ଦଳ ବେହେରା, ଗଙ୍ଗପଡ଼ା ଦଳ ବେହେରା, ଚନ୍ଦନ ହଜୁରୀ ପ୍ରଭୃତି ଅଗ୍ରଗଣ୍ୟ । ଏହି ମହାନ୍ ସ୍ୱାଭିମାନୀ ଓଡ଼ିଆ ବୀରମାନଙ୍କର ଦାୟାଦ ହିସାବରେ ମୁଁ ସେମାନଙ୍କର ଅମ୍ଳାନ ସ୍ମୃତି ପ୍ରତି ଓଡ଼ିଆ ଜାତି ତରଫରୁ ମୋର ଭକ୍ତିପୂତ ପ୍ରଣାମ ଜଣାଉଛି । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଖୋର୍ଦ୍ଧାର ପାଇକ ବିଦ୍ରୋହ, ଚକ୍ର ବିଶୋଇଙ୍କ ନେତୃତ୍ୱରେ ଘୁମୁସରର କନ୍ଧ ମେଳି, ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ସମ୍ବଲପୁରରେ ଇଂରେଜମାନଙ୍କ ବିରୋଧରେ ଲଗାତର ଯୁଦ୍ଧ ଏବେ ମଧ୍ୟ ଏ ଜାତିର ପ୍ରାଣରେ ସ୍ପନ୍ଦନ ଆଣିଦେଇଥାଏ ।

## ବ୍ରିଟିଶ୍ ଶାସନରେ ଓଡ଼ିଶା ବିଭାଜନ :

ମୋଟ ଉପରେ କହିବାକୁ ଗଲେ ୧୮୫୭ର ସିପାହୀ ବିଦ୍ରୋହ ପରେ ମଧ୍ୟ ଓଡ଼ିଆମାନେ ବ୍ରିଟିଶ୍ ସରକାରଙ୍କ ସହ ସାଲିସ୍ କରି ଚଳିପାରିଲେ ନାହିଁ ।

ଓଡ଼ିଆମାନଙ୍କର ଏହିପରି ଅବଦମନୀୟ ଚରିତ୍ରକୁ ଆଖିରେ ରଖି ଇଂରେଜମାନେ ଦୀର୍ଘ ୫୦ ବର୍ଷ ଧରି ଖଣ୍ଡ ଖଣ୍ଡ କରି ଜୟ କରିଥିବା ଓଡ଼ିଶାକୁ ଏକତ୍ରିତ କରି ରଖିବାକୁ କେବେ ଚାହୁଁ ନଥିଲେ । ଓଡ଼ିଆମାନଙ୍କୁ ଯଥାକ୍ରମେ : (୧) ବଙ୍ଗଳା (୨) ବିହାରର ଛୋଟନାଗପୁର (୩) ମଧ୍ୟପ୍ରଦେଶ (୪) ମାନ୍ଦ୍ରାସ ଓ (୫) ଗଡ଼ଜାତ ଏପରି ପାଞ୍ଚ ପ୍ରକାର ଶାସନ ଅଧୀନରେ ରଖିଲେ । କଟକ, ପୁରୀ, ବାଲେଶ୍ୱର ବଙ୍ଗଳା ଅଧୀନରେ ଗଞ୍ଜାମ, କୋରାପୁଟ, ମାନ୍ଦ୍ରାସ ଅଧୀନରେ, ବଲାଙ୍ଗୀର, କଳାହାଣ୍ଡି ଖଡ଼ିଆଳ, ପଦ୍ମପୁର, ଫୁଲଝର, ବସ୍ତର, ସମ୍ବଲପୁର ଇତ୍ୟାଦି ମଧ୍ୟପ୍ରଦେଶ ଅଧୀନରେ ସୁନ୍ଦରଗଡ଼, ବଣାଇ, ଗାଙ୍ଗପୁର, ଖରସୁଆଁ, ଛୋଟନାଗପୁର ଅଧୀନରେ ଏବଂ ଅନ୍ୟ ଗଡ଼ଜାତଗୁଡ଼ିକ ସ୍ୱ ସ୍ୱ ରାଜାମାନଙ୍କ ଶାସନାଧୀନ ରହିଲା । ସାମ୍ରାଜ୍ୟ ବିସ୍ତାର ଓ ବ୍ୟବସାୟୀଙ୍କ ସ୍ୱାର୍ଥ ଦୃଷ୍ଟିରୁ ଇଂରେଜମାନେ ଓଡ଼ିଶାରେ ନିଜ ଛିଟି ଦୃଢ଼ କରିବାକୁ ଯେତେ ତତ୍ପର ଥିଲେ ଓଡ଼ିଆମାନଙ୍କ ମଙ୍ଗଳ ବିଧାନ ପାଇଁ ବ୍ରିଟିଶ୍ ଶାସନ ତାହାଠାରୁ ଅଧିକ ଉଦାସୀନ ଥିଲା । ୧୮୬୬ରେ ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ମେରୁଦଣ୍ଡ ଦୋହଲାଇ ଦେଇଥିଲା । ୧୯୩୬ ମସିହା ପୂର୍ବରୁ ଓଡ଼ିଶା ଡିଭିଜନ୍‌ରେ ମାତ୍ର ୪ଟି ଜିଲ୍ଲା ଯଥା : ପୁରୀ, କଟକ, ବାଲେଶ୍ୱର ଓ ଅନୁଗୁଳ ଥିଲା । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ହେବା ପରେ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଏପରି

ଛଅଟି ଜିଲ୍ଲା କାର୍ଯ୍ୟ କରୁଥିଲା । ଓଡ଼ିଶାର ସୀମା ଦକ୍ଷିଣରେ ଚିଲିକା ଓ ଉତ୍ତରରେ ଦାନ୍ତନ୍ରୁ ଚେଲକ୍ଷେପନ ମଧ୍ୟରେ ସୀମିତ ଥିଲା । ଗଞ୍ଜାମରେ ତେଲୁଗୁ ଭାଷା ବାଧ୍ୟତା ମୂଳକ ହେବାରୁ ଋଷିକୂଲ୍ୟା ଗଡ଼ଠାରେ ଓଡ଼ିଆମାନଙ୍କ ତରଫରୁ ୧୮୭୦ରେ ପ୍ରଥମ ପ୍ରତିବାଦ ସଭା ହୋଇଥିଲା । ସେହିପରି ସମ୍ବଲପୁର ଜିଲ୍ଲାରେ ହିନ୍ଦୀ ପ୍ରଚଳନ କରିବାକୁ ମଧ୍ୟପ୍ରଦେଶ ସରକାର ୧୮୯୫ରେ ପ୍ରସ୍ତାବ କରିବାରୁ ସମ୍ବଲପୁର ନଗରବାସୀଙ୍କର ଏକ ପ୍ରତିନିଧି ଦଳ ୧୯୦୧ରେ ସିମିଲାଠାରେ ଗଭର୍ଣ୍ଣର ଜେନେରାଲଙ୍କୁ ଭେଟି ଓଡ଼ିଆ ଭାଷାର ପୁନଃ ପ୍ରବର୍ତ୍ତନ ପାଇଁ ଦାବୀ କରିଥିଲେ । ଏହି ସମୟରେ ଓଡ଼ିଶା ଡିଭିଜନ୍‌ରେ ବଙ୍ଗଳା ପ୍ରଚଳନ ପାଇଁ ମଧ୍ୟ ଚକ୍ରାନ୍ତ ହୋଇଥିଲା ।

## ଓଡ଼ିଆ ଜାତୀୟ ଆନ୍ଦୋଳନ ଓ ସ୍ୱତନ୍ତ୍ର ଓଡ଼ିଶା ଗଠନ–୧୯୦୩–୧୯୩୬ :

ଓଡ଼ିଆମାନଙ୍କୁ ଏପରି ବହୁଧା ବିଭକ୍ତ କରି ରଖିବା ପାଇଁ ବ୍ରିଟିଶ୍ ସରକାରଙ୍କ ଏପରି ଭେଦ ନୀତି ବିରୋଧରେ ଉପାୟ ସ୍ଥିର କରିବା ପାଇଁ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ଚିଲିକା କୂଳସ୍ଥ ରମ୍ଭା ପ୍ରାସାଦରେ ୧୯୦୩ର ଆଦ୍ୟ ଭାଗରେ ଓଡ଼ିଶାର ବହୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଏକ ବିରାଟ ସମାବେଶ ହୋଇଥିଲା । ଏହାକୁ ଉତ୍କଳ ସମ୍ମିଳନୀର ଉଦ୍‌ଯୋଗ ପର୍ବ ବୋଲି କୁହାଯାଇପାରେ । ଏଥି ପୂର୍ବରୁ ୧୯୦୨ ରେ ଗଞ୍ଜାମର ବିଶିଷ୍ଟ ନାଗରିକମାନେ ବଙ୍ଗଳାରୁ କଟକ, ପୁରୀ, ବାଲେଶ୍ୱର ମଧ୍ୟପ୍ରଦେଶରୁ ସମ୍ବଲପୁର ଓ ମାନ୍ଦ୍ରାଜରୁ ଗଞ୍ଜାମକୁ ମିଶାଇ ଗୋଟିଏ ବିଶ୍ୱବିଦ୍ୟାଳୟ ଅଧୀନରେ ଏକତ୍ର ରଖିବାକୁ ବଡ଼ଲାଟ୍ କର୍ଜନ ସାହେବଙ୍କୁ ଏକ ସ୍ମାରକପତ୍ର ଦେଇଥିଲେ । ୧୯୦୩ରେ କଟକଠାରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ପାଇଁ ଉତ୍କଳ ସମ୍ମିଳନୀ ଗଠନ କରାଯାଇଥିଲା । ଏଥିରେ ଉତ୍କଳ ଗୌରବ ମଧୁସୂଦନ ଦାସ ପାରଳାଖେମୁଣ୍ଡି ମହାରାଜା, ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବ, ମାନଧାତା ଗୋରାଚାନ୍ଦ ପଟ୍ଟନାୟକ, ଜୟପୁର ମହାରାଜା ବିକ୍ରମ ଦେବ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରମୁଖ ଓଡ଼ିଶାର ବହୁ ରାଜା, ଜମିଦାର, ଓକିଲ, ଛାତ୍ର, ଅଫିସର, ଏପରିକି କେତେକ ୟୁରୋପୀୟ ସାହେବ ମଧ୍ୟ ଯୋଗ ଦେଇଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ଆନ୍ଦୋଳନ ସାରା ଓଡ଼ିଶାରେ ତଥା ମେଦିନୀପୁର ସରେଇକଳା, ସିଂହଭୂମି, ଖରସୁଆଁ, ଜଳନ୍ତର, ଟିକାଲି, ଫୁଲଝର, ଇତ୍ୟାଦି ସୀମାନ୍ତ ଅଞ୍ଚଳରେ ସକ୍ରିୟ ରୂପ ଧାରଣ କଲା । ପାରଳାଖେମୁଣ୍ଡି ମହାରାଜା ବିଲାତ ଯାଇ ଗୋଲଟେବୁଲ ବୈଠକରେ ଓଡ଼ିଶା ରାଜ୍ୟ ସ୍ୱତନ୍ତ୍ର ହେବା ପାଇଁ ଓଡ଼ିଶା ତରଫରୁ ବାରମ୍ବାର ଅକାଟ୍ୟ ଯୁକ୍ତି ବାଢ଼ିଲେ । ପରିଶେଷରେ ୧୯୩୬ ଏପ୍ରିଲ ପହିଲାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । ସାର୍ ଜନ୍ ଅଷ୍ଟିନ ହବାକ୍ ଏହାର ପ୍ରଥମ ଗଭର୍ଣ୍ଣର ଭାବେ ଶପଥ ନେଲେ । ଏହିପରି ଦୀର୍ଘ ୧୮୦୩ରୁ ୧୯୩୬ ପର୍ଯ୍ୟନ୍ତ ଏକ ପ୍ରକାର ବିଭାଜିତ ଦାସତ୍ୱ ଶୃଙ୍ଖଳରୁ ଓଡ଼ିଶା ଆଂଶିକ ମୁକ୍ତି ପାଇଲା । ପୂର୍ବୋକ୍ତ ଛଅଟି ଜିଲ୍ଲା ସହ ଓଡ଼ିଶା ସରକାରଙ୍କ ଅଧୀନରେ ଛବିଶଟି ଗଡ଼ଜାତ ରହିଲା । ମହାରାଜା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବ ନୂତନ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ୧୯୩୭ ଏପ୍ରିଲ ପହିଲାରେ ଶପଥ ନେଇଥିଲେ । ଏହି ଅବସରରେ ଉତ୍କଳର ଉଲ୍ଲିଖିତ ବରପୁତ୍ରମାନଙ୍କୁ ରାଜ୍ୟବାସୀଙ୍କ ତରଫରୁ ମୁଁ ମୋର ସଶ୍ରଦ୍ଧ ପ୍ରଣାମ ଜଣାଉଛି ।

## ସ୍ୱାଧୀନ ଭାରତରେ ଓଡ଼ିଶାର ଦେଶୀୟ ରାଜ୍ୟ ମିଶ୍ରଣ :

୧୯୪୭ରେ ଭାରତ ସ୍ୱାଧୀନ ହେଲାବେଳକୁ ଓଡ଼ିଶାରେ ମୋଟ୍ ଛବିଶଟି ଗଡ଼ଜାତ ରାଜ୍ୟ ପୂର୍ବବତ ରାଜାମାନଙ୍କ ଅଧୀନରେ ରହିଥିଲା । କେତେକ ରାଜ୍ୟରେ ବେଠି, ବେଗାରି ପ୍ରଥା ବିରୋଧରେ ପ୍ରଜାମଣ୍ଡଳ ଆନ୍ଦୋଳନ ମଧ୍ୟ ଚାଲୁଥିଲା । ରଣପୁର ପ୍ରଜାମେଳିରେ ବ୍ରିଟିଶ୍ ସରକାରଙ୍କ ପଲିଟିକାଲ୍ ଏଜେଣ୍ଟ ବେଜେଲ୍‌ଗେଟ୍ ସାହେବଙ୍କୁ ଲୋକମାନେ ବାଡ଼େଇ ବାଡ଼େଇ ହତ୍ୟା କଲେ । ନୀଳଗିରି, ଢେଙ୍କାନାଳ, ତାଳଚେର ପ୍ରଭୃତି କେତେ କେତେ ରାଜ୍ୟରେ ପ୍ରଜା ଆନ୍ଦୋଳନ ତୀବ୍ର ରୂପ ଧାରଣ କରିବା ଦ୍ୱାରା ପୋଲିସ ଲାଠି ଓ ଗୁଳି ଚାଳନା କଲେ । ଢେଙ୍କାନାଳରେ ବାଜି ରାଉତ ନାମକ ଏକ ବାଳକ ଭୁବନ ନିକଟସ୍ଥ ବ୍ରାହ୍ମଣୀ ନଦୀ ଘାଟରେ ପୋଲିସର ଗୁଳିରେ ପ୍ରାଣ ହରାଇବା ଦ୍ୱାରା ପ୍ରଜା ଆନ୍ଦୋଳନ ଆହୁରି ଭୀଷଣ ଆକାର ଧରିଲା । ସାରା ଓଡ଼ିଶା ସ୍ତରରେ ସର୍ବଶ୍ରୀ ସାରଙ୍ଗଧର ଦାସ, ପବିତ୍ର ମୋହନ ପ୍ରଧାନ, ବୈଷ୍ଣବ ପଟ୍ଟନାୟକ, ବନମାଳୀ ଦାସ, ରଘୁନାଥ ସିଂହ ସାମନ୍ତ, ଗୋବିନ୍ଦ ମିଶ୍ର ପ୍ରମୁଖ ଗଡ଼ଜାତମାନଙ୍କରେ ପ୍ରଜା ମଣ୍ଡଳ ଆନ୍ଦୋଳନର ନେତୃତ୍ୱ ନେଇଥାନ୍ତି । ଗଡ଼ଜାତ ରାଜ୍ୟମାନେ ଓଡ଼ିଶା ଶାସନରେ ସାମିଲ ହୋଇଯିବାକୁ ଗଡ଼ଜାତ ଅଞ୍ଚଳର ଲୋକମାନେ ଦାବୀ କରୁଥିବାବେଳେ ହରେକୃଷ୍ଣ ମହତାବଙ୍କ ଅଧ୍ୟକ୍ଷତାରେ ରାଜ୍ୟ କଂଗ୍ରେସ ନେତୃତ୍ୱ ମଧ୍ୟ ଏହି ଦାବୀକୁ ଦୃଢ଼ ସମର୍ଥନ କରିଥାଏ । ଡାକ୍ତର ମହତାବ ସ୍ୱାଧୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ (ପ୍ରଥମ ମୁଖ୍ୟମନ୍ତ୍ରୀ ମଧ୍ୟ) କିନ୍ତୁ ଓଡ଼ିଶାର ଗଡ଼ଜାତ ରାଜାମାନେ ନିଜ ନିଜର ରାଜ୍ୟ ହରାଇ ଓଡ଼ିଶା ସଙ୍ଗେ ମିଶ୍ରଣ ପ୍ରସ୍ତାବକୁ କାୟମନୋବାକ୍ୟରେ ବିରୋଧ କରି ସେମାନଙ୍କ ସ୍ଥିତି ବଜାୟ ରଖିବାକୁ 'ଇଷ୍ଟର୍ଣ୍ଣ ଷ୍ଟେଟ ୟୁନିୟନ' ଗଢ଼ି ପାଲଟା ଅଭିଯାନ ଚଳାଇଥାନ୍ତି । ଏହି ୨୬ଟି ଗଡ଼ଜାତ ହେଲା ମୟୂରଭଞ୍ଜ, କେନ୍ଦୁଝର, ବାମଣ୍ଡା, ବଣାଇ, ରେଢ଼ାଖୋଲ, ଆଠମଲ୍ଲିକ, ତାଳଚେର, ହିନ୍ଦୋଳ, ନରସିଂହପୁର, ବଡ଼ମ୍ବା, ତିଗିରିଆ, ଆଠଗଡ଼, ରଣପୁର, ନୀଳଗିରି, ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା ବୌଦ୍ଧ, କଳାହାଣ୍ଡି, ବଲାଙ୍ଗୀର, ସୋନପୁର, ଗାଙ୍ଗପୁର, ସରେଇକଳା, ଖରସୁଆଁ, ପାଲଲହଡ଼ା, ଢେଙ୍କାନାଳ । ଏ ରାଜ୍ୟମାନଙ୍କ ମଧ୍ୟରୁ ମୟୂରଭଞ୍ଜ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜ ଦେଓ ଉଦାର ମନୋଭାବ ପୋଷଣ କରୁଥିବାବେଳେ ବାକିତକ ରାଜାମାନେ ପୂର୍ବାଞ୍ଚଳ ରାଜ୍ୟ ଗୋଷ୍ଠୀ ଗଢ଼ି ଓଡ଼ିଶା ସରକାରଙ୍କ ସହ ସର୍ତ୍ତମୂଳକ ସହଯୋଗ ପ୍ରସ୍ତାବ କରୁଥିଲେ । ମୟୂରଭଞ୍ଜ ମହାରାଜା ରାଜନ୍ୟ ମଣ୍ଡଳୀର ଏକ ବୈଠକରେ କହିଥିଲେ, "ମୁଁ ଅନୁଭବ କରୁଛି ଯେ, ଆମେ ଗଣତନ୍ତ୍ର ଓ ରାଜତନ୍ତ୍ରର ଦୋଛକିରେ ଅଛେ । ଗଣତନ୍ତ୍ରର ଢେଉ ଆମ ଆଡ଼େ ମାଡ଼ି ଆସୁଛି ।

ଐତିହାସିକ ଘଟଣା ପ୍ରବାହକୁ ଅବରୋଧ କଲେ ଆମେ ଶେଷ ହୋଇଯିବା । ଆମେ ଆଡ଼େଇ ହୋଇ ଘଟଣାଚକ୍ରକୁ ଗଡ଼ି ଚାଲିବାକୁ ବାଟ ଛାଡ଼ିଦେବା କିମ୍ବା ତାହାର ବାଟ ଓଗାଳି ଆପେ ଆପେ ପେଶି ହୋଇଯିବା । ଆମେ ଇତିହାସର ଧାରାକୁ କୌଶଳ କରି ଏଡ଼ାଇ ଦେଇ ଜନସାଧାରଣଙ୍କ ଇଚ୍ଛା ସହ ସାଲିସ୍ କରି (କୋମ) ଚଳାଇ ନେଇ ପାରିବା ନାହିଁ ।" କେବଳ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ପୂର୍ବରୁ ମୟୂରଭଞ୍ଜରେ ଲୋକ ପ୍ରତିନିଧି ଶାସନ ପ୍ରତିଷ୍ଠା କରି ସାରିଥିବାରୁ ଓଡ଼ିଶା ସରକାରଙ୍କ ସହ 'ମିଶ୍ରଣ ଆଲୋଚନାରେ ଭାଗ ନେବାର ମଉକା ନଥିଲା । ୧୯୪୭ ଡିସେମ୍ବର ମାସରେ ମହତାବଙ୍କ ପ୍ରବଳ ଉଦ୍ୟମ ଫଳେ ସ୍ୱାଧୀନ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓଡ଼ିଶାର ରାଜନ୍ୟ ମଣ୍ଡଳୀକୁ କଟକଠାରେ ଏକ ଦୀର୍ଘ ଆଲୋଚନାରେ ଭେଟିଲେ ।

ପରିଶେଷରେ ରାଜାମାନେ ଓଡ଼ିଶା ସରକାରଙ୍କ ସହ ମିଶ୍ରଣ ପ୍ରସ୍ତାବରେ ରାଜି ହୋଇ ସନନ୍ଦ ସ୍ୱାକ୍ଷର କଲେ । ଫଳରେ ଗଡ଼ଜାତମାନ ୧୯୪୮ ଜାନୁଆରୀ ପହିଲାଠାରୁ ଓଡ଼ିଶା ରାଜ୍ୟର ଅବିଚ୍ଛେଦ ଅଙ୍ଗ ହୋଇ ମିଶି ଗଲେ । କେବଳ ଅଳ୍ପକାଳ ପରେ, ମୟୂରଭଞ୍ଜ ରାଜ୍ୟ ଅକ୍ଟୋବର ମାସରେ ଓଡ଼ିଶା ସହ ସାମିଲ ହେଲା । ମାତ୍ର ୧୯୪୮ ମଇ ମାସରୁ ଷଡ଼େଇକଳା ଓ ଖରସୁଆଁକୁ ରାଜନୈତିକ ଷଡ଼ଯନ୍ତ୍ରରେ ବିହାର ସହ ମିଶାଇ ଦିଆଗଲା । ଯୁଗଯୁଗ ଧରି ଓଡ଼ିଶା ସୀମାନ୍ତର ଏକ ଅବିଚ୍ଛେଦ୍ୟ ଅଙ୍ଗ ଷଡ଼େଇକଳା, ଖରସୁଆଁ, ବିହାର ସହ ରହିବାର ବିଚ୍ଛେଦ ଦାଗ ଓ ଦୁଃଖ ଚିରକାଳ ଓଡ଼ିଆମାନଙ୍କ ମନରୁ ଲିଭି ପାରିବ ନାହିଁ ।

## ସ୍ୱାଧୀନତା ପରେ ଜିଲ୍ଲା ଗଠନ :

ଗଡ଼ଜାତ ମିଶ୍ରଣର ଅବ୍ୟବହିତ ପରେ ୧୯୪୮ରେ ଉପସ୍ଥିତ ଛଅଟି ଜିଲ୍ଲାକୁ ମିଶାଇ ଢେଙ୍କାନାଳ, ସୁନ୍ଦରଗଡ଼, ବଲାଙ୍ଗୀର, ମୟୂରଭଞ୍ଜ, କେନ୍ଦୁଝର, ଫୁଲବାଣୀ ଓ ପରେ କଳାହାଣ୍ଡି ଏପରି ସାତ ୭ଟି ଜିଲ୍ଲା ଓଡ଼ିଶା ସରକାର ଘୋଷଣା କଲେ । କହିବା ବାହୁଲ୍ୟ ଯେ, ଏତଦ୍ୱାରା ଗଡ଼ଜାତ ମିଶ୍ରଣ ସପକ୍ଷ ବା ବିପକ୍ଷରେ ବିଶେଷ ଆଗ୍ରହ ସହକାରେ ଅଂଶ ଗ୍ରହଣ କରିଥିବା ବଡ଼ ବଡ଼ ରାଜାମାନଙ୍କ ରାଜ୍ୟଗୁଡ଼ିକୁ ଉପରୋକ୍ତ ମତେ ଜିଲ୍ଲା କରି ସେମାନଙ୍କ ଭାବୋଚ୍ଛ୍ୱାସ ପ୍ରତି ସରକାର ଯଥୋଚିତ ସମ୍ମାନ ଦେଲେ । ସ୍ୱାଧୀନତା ପରେ ପର୍ଯ୍ୟାୟକ୍ରମେ ନିମ୍ନୋକ୍ତ ନୂଆ ସବଡ଼ିଭିଜନମାନ ପ୍ରତିଷ୍ଠା ହେଲା । ୧୯୫୨ରେ ଉଦୟଗିରି ଓ ବାଲିଗୁଡ଼ା ତାଲୁକକୁ ନେଇ ଫୁଲବାଣୀ ଜିଲ୍ଲାରେ ବାଲିଗୁଡ଼ା ସବ୍‌ଡ଼ିଭିଜନ ଓ ଆଠଗଡ଼ ସବ୍‌ଡିଭିଜନ, ୧୯୫୬ରେ ପାରଳାଖେମୁଣ୍ଡି ସବ୍‌ଡିଭିଜନ, ୧୯୫୯ରେ ଭୁବନେଶ୍ୱର ସବ୍‌ଡିଭିଜନ, ୧୯୬୨ରେ କଳାହାଣ୍ଡିରୁ କାଶୀପୁର ତହସିଲକୁ ଆଣି କୋରାପୁଟରେ ମିଶାଇ ରାୟଗଡ଼ା ସବ୍‌ଡ଼ିଭିଜନ, ଜୟପୁର, ଗୁଣୁପୁର ଓ ମାଲକାନଗିରି ଏପରି ୪ଟି ସ୍ୱତନ୍ତ୍ର ସବ୍‌ଡ଼ିଭିଜନ ଏବଂ ୧୯୬୯ରେ କଟକ ଜିଲ୍ଲାର ବାଙ୍କୀ ଏବଂ ସମ୍ବଲପୁର ଜିଲ୍ଲାରେ ପଦ୍ମପୁର ସବ୍‌ଡ଼ିଭିଜନ ପ୍ରତିଷ୍ଠା କରାଯାଇଥିଲା । ୧୯୫୨ରେ ପ୍ରଥମ ସାଧାରଣ ନିର୍ବାଚନ ବେଳକୁ ଭାରତରେ ସର୍ବମୋଟ ମାତ୍ର ୩୦୦ଟି ଜିଲ୍ଲା ଥିବାବେଳେ ୧୯୯୨ରେ ଏହିସଂଖ୍ୟା ୫୭୨ରେ ପହଞ୍ଚିଲା, ଅର୍ଥାତ ୪୦ ବର୍ଷ ମଧ୍ୟରେ ସର୍ବଭାରତୀୟ ସ୍ତରରେ ଜିଲ୍ଲାମାନଙ୍କ ସଂଖ୍ୟାର ଅଭିବୃଦ୍ଧି ଘଟିଥିଲାବେଳେ ଓଡ଼ିଶାରେ ଜିଲ୍ଲା ସଂଖ୍ୟା ଅପରିବର୍ତ୍ତିତ ରହି ସେହି ୧୩ରେ ସୀମିତ ଥିଲା । ସେତେବେଳର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଓଡ଼ିଶାର ପ୍ରଶାସନର ଦକ୍ଷତା ବଢ଼ାଇବାକୁ ନୂତନ ଜିଲ୍ଲା ଗଠନ ପରିକଳ୍ପନା କରୁଥିବାବେଳେ ଭାରତ ସରକାର ରାଜ୍ୟ ପୁନର୍ଗଠନ କମିଶନ (ସୀମା କମିଶନ) ବସାଇଲେ । ଏହି ମଉକାରେ ଜିଲ୍ଲା ପୁନର୍ଗଠନ ସାଙ୍ଗକୁ ବିହାରରୁ ଷଡ଼େଇକଳା ଓ ଖରସୁଆଁ ଦୁଇଟି ଓଡ଼ିଆ–ଅଧ୍ୟୁଷିତ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ପାଇଁ ନିଜର ଦାବୀ କମିଶନ ଆଗରେ ଉପସ୍ଥାପିତ କରିବାକୁ ରାଜ୍ୟ ସରକାର ନିଷ୍ପତ୍ତି କଲେ । ତଦନୁସାରେ ଷଡ଼େଇକଳା ଓ ଖରସୁଆଁ ତଥା ଦକ୍ଷିଣରେ ଆନ୍ଧ୍ର ଓ ପଶ୍ଚିମରେ ମଧ୍ୟପ୍ରଦେଶ ଅଧୀନରେ ରହି ଯାଇଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଉପରେ ଓଡ଼ିଶାର ଦାବୀ ସମ୍ବନ୍ଧୀୟ ରେକର୍ଡ଼ ପତ୍ର ଠିକ୍ କରିବାକୁ ତଦାନୀନ୍ତନ ବିକାଶ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଅଧୀନରେ ଏକ ସ୍ୱତନ୍ତ୍ର ବିଭାଗ ଖୋଲାଯାଇ ୧୯୫୫ ମସିହାରେ ଧମାଧମ କାର୍ଯ୍ୟ ଚାଲିଲା । ଶ୍ରୀଯୁକ୍ତ ରାଧାନାଥ ରଥ ଅଦମ୍ୟ ପରିଶ୍ରମ କରି ଓଡ଼ିଶା ସରକାରଙ୍କ ତରଫରୁ କମିଶନ ଆଗରେ ଓଡ଼ିଶାର ଦାବୀ ସମ୍ପର୍କରେ ଅକାଟ୍ୟପ୍ରମାଣ ଉପସ୍ଥାପିତ କଲେ । କିନ୍ତୁ ସାମ୍ପ୍ରତିକ ରାଜନୈତିକ ଜଟିଳତା ଏବଂ ସେଥି ସହିତ ଦିଲ୍ଲୀରେ ବିହାର ନେତାଙ୍କ ପ୍ରାଧାନ୍ୟ ଯୋଗୁଁ ୧୯୫୬ରେ ସୀମା କମିଶନ ଓଡ଼ିଶାର ଉକ୍ତ ଅଞ୍ଚଳ ଦାବୀକୁ ଅଗ୍ରାହ୍ୟ କରିଦେବାରେ ଓଡ଼ିଶାରେ ଖୁବ ତୀବ୍ର ସୀମା ଆନ୍ଦୋଳନ ହୋଇଥିଲା । ୧୯୫୬ରେ ନବବାବୁ ସରକାରରୁ ଚାଲିଯିବାରୁ ତାଙ୍କର ଜିଲ୍ଲା ପୁନର୍ଗଠନ ସ୍ୱପ୍ନ ସାକାର ହୋଇପାରିଲା ନାହିଁ । ୧୯୫୬ରୁ ୧୯୬୧ ଯାଏ ଓଡ଼ିଶାରେ ରାଜନୈତିକ ଅସ୍ଥିରତା ଲାଗି ରହିଥିବାରୁ ଜିଲ୍ଲା ପୁନର୍ଗଠନ ସମ୍ଭବ ନ ଥିଲା । '୧୯୬୧ରେ ଓଡ଼ିଶାରେ' ନିର୍ମାଣ ଯୁଗର ଅଭ୍ୟୁଦୟ ହେଲା । ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଆମ ରାଜ୍ୟରେ ରାଜନୈତିକ ସ୍ଥିରତା ଆସିଥିଲେ ମଧ୍ୟ ଏକ୍ସପ୍ରେସ୍ ରାଜପଥ, ପାରାଦ୍ୱୀପ ବନ୍ଦର, ସୁନାବେଡ଼ା ମିଗ୍ ବିମାନ କାରଖାନା, ବାଲିମେଲା ଓ ତାଳଚେର ଥର୍ମାଲ ଯୋଜନା ପ୍ରମୁଖ ଅନେକ ବୃହତ ଯୋଜନା ହୋଇ ରାଜ୍ୟରେ ଶିଳ୍ପ ପ୍ରସାର ପାଇଁ ଦ୍ରୁତ ପଦକ୍ଷେପମାନ ଗ୍ରହଣ କରାଯାଉଥିବାରୁ ସେହି ସ୍ୱଳ୍ପକାଳ ମଧ୍ୟରେ ଜିଲ୍ଲା ପୁନର୍ଗଠନ କାର୍ଯ୍ୟ ଆରମ୍ଭ କରିବା ସମ୍ଭବ ହୋଇ ନ ଥିଲା । ମାତ୍ର ଦୁଇବର୍ଷ ପରେ ୧୯୬୩ରେ କାମରାଜ ଯୋଜନାରେ ବିଜୁ ବାବୁ ସରକାରରୁ ଓହରି ଯିବାରେ ଓଡ଼ିଶାରେ ପୁଣି ରାଜନୈତିକ ଅସ୍ଥିରତା ଲାଗି ରହିଲା । ଏହିପରି ଅସ୍ଥିରତା ମଧ୍ୟରେ ୧୯୭୩ ମସିହାରେ ଓଡ଼ିଶାରେ ରାଷ୍ଟ୍ରପତି ଶାସନର ଅବ୍ୟବହିତ ପୂର୍ବରୁ ସରକାର ନ୍ୟାୟମୂର୍ତ୍ତି ରାଜ କିଶୋର ଦାସଙ୍କ ଅଧ୍ୟକ୍ଷତାରେ ଏକ ଜିଲ୍ଲା ପୁନର୍ଗଠନ କମିଟି ବସାଇଲେ । ଏହି କମିଟି ରିପୋର୍ଟ ୧୯୭୪ ମସିହାରେ ସରକାରଙ୍କ ହସ୍ତଗତ ହୋଇଥିଲେ ମଧ୍ୟ ସଫଳର ଅସୁବିଧା ବା ସମ୍ପୃକ୍ତ ସରକାରମାନଙ୍କର ଆବଶ୍ୟକୀୟ ରାଜନୈତିକ ଇଚ୍ଛା ଶକ୍ତିର ଅଭାବରୁ ହେଉ ୧୯୯୦ ପର୍ଯ୍ୟନ୍ତ ତାହା ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ପାରିନଥିଲା ।

୧୯୯୦ରେ ଜନତା ଦଳ ସରକାରଙ୍କ ପ୍ରଥମ ବଜେଟ୍‌କାଳୀନ ବିଧାନ ସଭା ଅଧିବେଶନରେ ବହୁ ମାନ୍ୟବର ସଭ୍ୟ ଅତି ଉତ୍ସୁକତା

# ପୁନର୍ଗଠନ ଜିଲ୍ଲାମାନଙ୍କର କ୍ଷେତ୍ରଫଳ ଓ ଲୋକସଂଖ୍ୟା

| କ୍ର:ସଂ: | ଜିଲ୍ଲାର ନାମ | କ୍ଷେତ୍ରଫଳ (ବର୍ଗ କି.ମି.) | ଲୋକସଂଖ୍ୟା |
|---|---|---|---|
| (୧) | ମୟୂରଭଞ୍ଜ | ୧୦,୪୧୦ | ୧୮,୭୨,୪୯୬ |
| (୨) | ବାଲେଶ୍ୱର | ୩,୭୦୬ | ୧୬,୯୨,୪୩୯ |
| (୩) | ଭଦ୍ରକ | ୨,୭୮୮ | ୧୧,୦୩,୮୮୨ |
| (୪) | କେନ୍ଦୁଝର | ୮,୩୩୬ | ୧୩,୫୫,୬୬୬ |
| (୫) | ଯାଜପୁର | ୨,୮୮୫ | ୧୩,୮୦,୨୦୩ |
| (୬) | କେନ୍ଦ୍ରାପଡ଼ା | ୨,୬୪୪ | ୧୨,୪୨,୪୭୦ |
| (୭) | ଜଗତସିଂହପୁର | ୧,୭୫୯ | ୯,୩୩,୨୯୬ |
| (୮) | କଟକ | ୩,୯୨୫ | ୨୦,୪୩,୩୩୮ |
| (୯) | ଢେଙ୍କାନାଳ | ୪,୫୯୭ | ୯,୪୨,୬୭୭ |
| (୧୦) | ଅନୁଗୁଳ | ୬,୩୪୭ | ୯,୫୮,୦୦୩ |
| (୧୧) | ଫୁଲବାଣୀ | ୮,୯୧୦ | ୮,୫୮,୫୬୩ |
| (୧୨) | ନୟାଗଡ଼ | ୩,୯୫୪ | ୭,୬୬,୭୮୪ |
| (୧୩) | ଖୋର୍ଦ୍ଧା | ୨,୮୮୮ | ୧୪,୯୭,୮୪୬ |
| (୧୪) | ପୁରୀ | ୩,୦୫୫ | ୧୨,୯୫,୫୬୨ |
| (୧୫) | ଗଞ୍ଜାମ | ୮,୦୩୩ | ୨୬,୮୪,୩୭୯ |
| (୧୬) | ଗଜପତି | ୩,୦୫୬ | ୪,୫୮,୭୬୧ |
| (୧୭) | ରାୟଗଡ଼ା | ୭,୫୮୫ | ୭,୧୪,୫୯୯ |
| (୧୮) | କୋରାପୁଟ | ୮,୫୩୪ | ୧୦,୫୫,୮୭୪ |
| (୧୯) | ମାଲ୍‌କାନ୍‌ଗିରି | ୬,୧୧୫ | ୪,୨୦,୯୫୦ |
| (୨୦) | ନବରଙ୍ଗପୁର | ୫,୧୩୫ | ୮,୦୮,୨୧୫ |
| (୨୧) | କଳାହାଣ୍ଡି | ୮,୧୯୭ | ୧୧,୨୮,୬୫୯ |
| (୨୨) | ନୂଆପଡ଼ା | ୩,୪୦୮ | ୪,୬୩,୩୨୫ |
| (୨୩) | ବଲାଙ୍ଗୀର | ୬,୫୫୨ | ୧୨,୨୭,୩୪୫ |
| (୨୪) | ସୋନପୁର (ସୁବର୍ଣ୍ଣପୁର) | ୨,୨୮୪ | ୪,୭୬,୪୧୦ |
| (୨୫) | ସୁନ୍ଦରଗଡ଼ | ୯,୯୪୨ | ୧୫,୬୮,୪୪୨ |
| (୨୬) | ବରଗଡ଼ | ୫,୮୩୨ | ୧୨,୦୩,୬୩୦ |
| (୨୭) | ସମ୍ବଲପୁର | ୧୧,୬୮୯ | ୧୪,୮୪,୬୭୫ |

ସହକାରେ ନୂତନ ଜିଲ୍ଲା ଗଠନ ପାଇଁ ସରକାରଙ୍କଠାରେ ଦାବୀ ଆଳରେ ରାଜସ୍ୱ ମନ୍ତ୍ରୀ ଭାବେ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଜିଲ୍ଲା ପୁନର୍ଗଠନ ନିମନ୍ତେ ମୋଠାରୁ ପ୍ରତିଶ୍ରୁତି ଚାହିଁଥିଲେ । ବହିବା ବାହୁଲ୍ୟ ଯେ ଜିଲ୍ଲା ପୁନର୍ଗଠନ ପାଇଁ ନିର୍ବାଚନ ଇସ୍ତାହାରରେ ଆମ ଦଳ ଲୋକମାନଙ୍କୁ ପ୍ରତିଶ୍ରୁତି ଦେଇଥିଲା । ତାଙ୍କର ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱରେ (୧୯୬୧-୧୯୬୩) ଏହି କାର୍ଯ୍ୟ ଅପୂରଣୀୟ ଥିବାରୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଜିଲ୍ଲା ପୁନର୍ଗଠନକୁ ଅଗ୍ରାଧିକାର ଦେବାକୁ ଚାହୁଁଥିଲେ । ରାଜସ୍ୱ ମନ୍ତ୍ରୀ ହିସାବରେ ଏହି ଗୁରୁ ଦାୟିତ୍ୱ ସମ୍ପାଦନ କରିବା ମୋର ପ୍ରଥମ କାମ ହେବ ବୋଲି ଜାଣି ଅତି ଆନନ୍ଦ ଓ ଉନ୍ମାଦନା ସହକାରେ ୧୯୯୦ ଅକ୍ଟୋବର ମାସ ମଧ୍ୟରେ ଜିଲ୍ଲା ପୁନର୍ଗଠନ ପ୍ରକ୍ରିୟା ସମାପ୍ତି କରି ନ ପାରିଲେ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇଦେବି ବୋଲି ବିଧାନ ସଭାରେ ସେ ଦିନ ମୋର ଦପୋକ୍ତି ପ୍ରକାଶ କରି ଥିଲି ଏବଂ ସବୁଠାରୁ ଆନନ୍ଦର କଥା ଯେ ମୁଖ୍ୟମନ୍ତ୍ରୀ ଏଥିପାଇଁ ସବୁଜ ସଙ୍କେତ ପୂର୍ବକ ତତ୍‌କ୍ଷଣାତ୍ ତାଙ୍କ ନିଜ ଅଧ୍ୟକ୍ଷତାରେ ଏକ କ୍ୟାବିନେଟ ସବ୍‌କମିଟି ଗଠନ କରି ଦ୍ରୁତ ଗତିରେ ଏ କାର୍ଯ୍ୟକୁ ଆଗେଇ ନେବା ପାଇଁ ମୋତେ ପରାମର୍ଶ ଦେଇଥିଲେ । ମୋ ଚାହିଁବା ମୁତାବକ ଯଥା ସମୟରେ ବିଭାଗୀୟ ଅଫିସରମାନେ ଆବଶ୍ୟକୀୟ ତଥ୍ୟ ଯୋଗାଇ ଦେଇଥିବାରୁ ଏ କାମ ସମ୍ପୂର୍ଣ୍ଣ କରିବା ସମ୍ଭବ ହୋଇଥିଲା । ୧୯୯୦ ଅକ୍ଟୋବର ମାସରେ ୧୦ଟି ନୂଆ ଜିଲ୍ଲା ଗଠନ ହେବା କଥା ମନ୍ତ୍ରୀମଣ୍ଡଳରେ ନିଷ୍ପତ୍ତି ନିଆଯିବା ସଙ୍ଗେ ସଙ୍ଗେ ସେଥିପାଇଁ ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କରିବାକୁ ପାଞ୍ଚ କୋଟି ଟଙ୍କାର ଖର୍ଚ୍ଚ ମଧ୍ୟ ମଞ୍ଜୁର ହୋଇଗଲା । ମାତ୍ର ରାଜ୍ୟର ଚାରିଆଡୁ ନୂତନ ଜିଲ୍ଲା ପାଇଁ ପ୍ରବଳ ଦାବୀ ହେବାରେ ସରକାର ଆହୁରି ଅଧିକ ପାଞ୍ଚୋଟି ନୂଆ ଜିଲ୍ଲାକୁ ମିଶାଇ ସର୍ବମୋଟ ୧୫ଟି ନୂଆ ଜିଲ୍ଲା ଗଢ଼ିବା ପାଇଁ ପରେ ପରେ ନିଷ୍ପତ୍ତି ନେଲେ ।

ପୂର୍ବୋକ୍ତ ଜିଲ୍ଲା ପୁନର୍ଗଠନ କମିଟିର ସୁପାରିଶ ସାଙ୍ଗକୁ ଦୀର୍ଘ ୧୫ ବର୍ଷ ମଧ୍ୟରେ ରାଜ୍ୟରେ ପରିବର୍ତ୍ତିତ ସାମ୍ପ୍ରତିକ, ରାଜନୈତିକ, ଭୌଗୋଳିକ, ଆର୍ଥିକ ଓ ସାମାଜିକ ପରିସ୍ଥିତି ଏବଂ ଜନମତକୁ ଆଖିରେ ରଖି ଏହି ନୂଆ ଜିଲ୍ଲାମାନ ଗଠନ କରାଯାଇଛି । ୧୯୯୨ ଅକ୍ଟୋବର ୨ ତାରିଖ ପବିତ୍ର ଗାନ୍ଧୀଙ୍କ ଜନ୍ମ ଦିନରେ ଗଞ୍ଜାମରୁ ଅଲଗା କରି ଗଜପତି ଜିଲ୍ଲା ଏବଂ କୋରାପୁଟରୁ ଅଲଗା କରି ଯଥାକ୍ରମେ ମାଲକାନାଗିରି, ରାୟଗଡ଼ା ଓ ନବରଙ୍ଗପୁର, ଏପରି ମୋଟ ୪ଟି ଜିଲ୍ଲା ପ୍ରତିଷ୍ଠା ହୋଇସାରିଛି । ଯାହାଙ୍କର ଅକ୍ଳାନ୍ତ ପରିଶ୍ରମର ଫଳ ସ୍ୱରୂପ ଆମ୍ଭେମାନେ ଆଜି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଭୋଗ କରୁଛୁ, ସେହି ପୁଣ୍ୟଶ୍ଳୋକ ପାରଳା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କ ଅମ୍ଳାନ ସ୍ମୃତିର ଉଜ୍ଜ୍ୱଳ ସ୍ମାରକୀ ସ୍ୱରୂପ ପ୍ରଥମ କରି ଗଜପତି ଜିଲ୍ଲା ପ୍ରତିଷ୍ଠା କରିପାରି ଥିବାରୁ ଏହି ଅବସରରେ ଆମେ ଗର୍ବ ଅନୁଭବ କରୁଛୁ । ଏହି ସଂଯୋଗରେ ଅନ୍ୟ ଖୋରଧା, ନୟାଗଡ଼, ସୋନପୁର, ବରଗଡ଼, କେନ୍ଦ୍ରାପଡ଼ା, ଜଗତସିଂହପୁର, ଯାଜପୁର, ନୂଆପଡ଼ା, ଅନୁଗୁଳ ଓ ଭଦ୍ରକ ଏପରି ଆଉ ୧୦ଟି ଜିଲ୍ଲାର ପ୍ରତିଷ୍ଠା ଉତ୍ସବ ମଧ୍ୟ ପାଳନ କରିସାରିଛୁ । ପ୍ରସ୍ତାବିତ ବାମଣ୍ଡା ଜିଲ୍ଲାର ସଦର ମହକୁମା ସମ୍ପର୍କରେ ନିଷ୍ପତ୍ତି ନିଆଯିବା ପରେ ଏହି ଜିଲ୍ଲା ଯଥାଶୀଘ୍ର ପ୍ରତିଷ୍ଠା କରାଯିବ ।

ପ୍ରକାଶ ଥାଉକି ବାମଣ୍ଡା ଜିଲ୍ଲା ଗଠିତ ହେବାପରେ ଏହାର କ୍ଷେତ୍ରଫଳ ଚ. ୧୪୯ ବର୍ଗ କିଲୋମିଟର ଓ ଏହାର ଲୋକସଂଖ୍ୟା ୪,୬୫,୭୩୨ ହେବ ଏବଂ ଏହି ସଂଖ୍ୟା ଯଥାକ୍ରମେ ସମ୍ବଲପୁରରୁ କଟିଯିବ ।

ଏହି ପୃଷ୍ଠଭୂମିରେ ଯେଉଁ ବରପୁତ୍ରମାନଙ୍କ ଉଦ୍ୟମ ଓ ଅବଦାନରେ ଓଡ଼ିଶା ଅଦ୍ୟାବଧି ଉପସ୍ଥିତ ସ୍ଥିତିରେ ପହଞ୍ଚି ପାରିଛି, ସେହି ଚିରସ୍ମରଣୀୟ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ଓଡ଼ିଶାର ଜନସାଧାରଣଙ୍କ ତରଫରୁ ମୁଁ ଆଜି ମୋର ବିନମ୍ର ପ୍ରଣତି ଜଣାଉଛି । ଯାହାଙ୍କର ବଳିଷ୍ଠ ନେତୃତ୍ୱ ଓ ନିର୍ଦ୍ଦେଶରେ ଏହି ଗୁରୁ ଦାୟିତ୍ୱ ସମ୍ପାଦନ କରିବାରେ ମୁଁ ସମର୍ଥ ହୋଇପାରିଛି ସେହି ଅବଦମନୀୟ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କଠାରେ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ମନ୍ତ୍ରୀ ପରିଷଦର ମୋର ପ୍ରିୟ ସହକର୍ମୀ, ବିଧାନ ସଭାର ସମସ୍ତ ବିଧାୟକ ବନ୍ଧୁ, ବିଭାଗୀୟ ଦକ୍ଷ ଅଫିସରବୃନ୍ଦ ଓ ସର୍ବୋପରି ମୋର ନମସ୍ୟ ଓଡ଼ିଶାର ଜନସାଧାରଣଙ୍କୁ ଏହି ଅବସରରେ ହାର୍ଦ୍ଦିକ ଧନ୍ୟବାଦ ।

---

ରାଜସ୍ୱ ମନ୍ତ୍ରୀ, ଓଡ଼ିଶା

# କଳିଙ୍ଗାଧିପତି ମହାରାଜା ମହାମେଘବାହନ ଐର ଖାରବେଳ

* ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ

ମୌର୍ଯ୍ୟବଂଶୀୟ ସମ୍ରାଟ ଅଶୋକଙ୍କ କଳିଙ୍ଗ ବିଜୟ ବିଶ୍ୱ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ଏହାଦ୍ୱାରା ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇ ଅହିଂସା ବୌଦ୍ଧଧର୍ମ ପ୍ରଚାର ଓ ପ୍ରସାରରେ ଆତ୍ମନିୟୋଗ କରିଥିଲେ । କଳିଙ୍ଗବାସୀଙ୍କ ଅପୂର୍ବ ତ୍ୟାଗ, ସାହାସ, ବୀରତ୍ୱ ଓ ଆତ୍ମବଳୀ ନିକଟରେ ବିଜେତା ଅଶୋକ ମସ୍ତକ ଅବନତ କରିଥିଲେ ଏବଂ ତାଙ୍କ ହୃଦୟରେ ଭାବାନ୍ତର ଜାତ ହୋଇଥିଲା । ଏହାର ଫଳ ସ୍ୱରୂପ ବୌଦ୍ଧଧର୍ମ ବିଶ୍ୱଧର୍ମରେ ପରିଣତ ହେବାର ପଥ ଉନ୍ମୁକ୍ତ ହୋଇଥିଲା ।

ଅଶୋକଙ୍କ ମୃତ୍ୟୁପରେ କଳିଙ୍ଗରେ ଚେଦି ଓ ଚେତି ରାଜବଂଶର ଅଭ୍ୟୁଦୟ ଘଟିଥିଲା । ମହାମେଘବାହାନ ଐର ଖାରବେଳ ଏହି ରାଜବଂଶର ଶ୍ରେଷ୍ଠ ନରପତି । ସେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ କଳିଙ୍ଗ ରାଜସିଂହାସନ ଆରୋହଣ କରିଥିଲେ । କଳିଙ୍ଗ ଇତିହାସରେ ତାଙ୍କର ଆବିର୍ଭାବ ଓ ରାଜପଣ ଏକ ଅବିସ୍ମରଣୀୟ ଘଟଣା । ରାଜଧାନୀ ଭୁବନେଶ୍ୱର ଉପକଣ୍ଠରେ ଅବସ୍ଥିତ ଉଦୟଗିରି ପାହାଡ଼ର ହାତୀଗୁମ୍ଫା ଶିଳାଲେଖରେ ତାଙ୍କ ଗୌରବୋଜ୍ଜ୍ୱଳ ରାଜତ୍ୱ ଓ କୃତିତ୍ୱ ଲିପିବଦ୍ଧ ହୋଇଛି । ହାତୀଗୁମ୍ଫା ବିବରଣୀ ଅନୁସାରେ ମଗଧର ନନ୍ଦବଂଶୀୟ ଜନୈକ ରାଜା କଳିଙ୍ଗ ଅଧିକାର କରି ଏକ ଜଳପ୍ରଣାଳୀ ନିର୍ମାଣ କରାଇଥିଲେ । ଏହି ସମୟରେ କଳିଙ୍ଗ ଜିନ ମୂର୍ତ୍ତି ଅପହୃତ ହୋଇ ବିଜେତା ରାଜାଙ୍କ ଦ୍ୱାରା ମଗଧକୁ ନିଆଯାଇଥିଲା । ଏହି ପରାଭବ କଳିଙ୍ଗବାସୀଙ୍କ ମନ ବହୁ ବର୍ଷ ଧରି ଅତ୍ୟନ୍ତ ଦୁଃଖଦାୟକ ହୋଇଥିଲା । ରାଷ୍ଟ୍ରୀୟ ସ୍ୱାଭିମାନର ପ୍ରତୀକ ଜିନାସନର ଉଦ୍ଧାର ପାଇଁ କଳିଙ୍ଗବାସୀଙ୍କ ଅନ୍ତରାତ୍ମା ସତତ ବ୍ୟାକୁଳ ବିଗଳିତ ହେଉଥିଲା । କେବଳ ନେତାର ଅଭାବ ଥିଲା । କଳିଙ୍ଗ ଚେଦି ରାଜବଂଶରେ ଖାରବେଳଙ୍କ ଆବିର୍ଭାବ ଏ ସୁଯୋଗ ଯୋଗାଇ ଦେଲା ।

ସମ୍ରାଟ ଖାରବେଳଙ୍କ ଜନ୍ମ ସମ୍ବନ୍ଧରେ ଡକ୍ଟର ନୃସିଂହ ଚରଣ ପଣ୍ଡାଙ୍କ 'ଖାରବେଳ' ଉପନ୍ୟାସରେ ନିମ୍ନ ବିବରଣୀ ପ୍ରଦତ୍ତ ; ରାଜକୁମାର ଖାରବେଳଙ୍କୁ ମାଆ କଳିଙ୍ଗରାଣୀ ପଦ୍ମିନୀ କହୁଛନ୍ତି : "ମୁଁ ତୋତେ କହି ସାରିଛି, ମୁଁ ନିଃସନ୍ତାନ ଥିଲି । ମୁନ୍ନା, ମୁଁ ତୋର ପିତାଙ୍କର ଏକମାତ୍ର ପତ୍ନୀ, ସନ୍ତାନଟିଏ ପାଇବା ପାଇଁ ଆମେ ଅନେକ ଚେଷ୍ଟା କରିଥିଲୁ । ରାଜବୈଦ୍ୟଙ୍କ ଭେଷଜ ଚିକିତ୍ସା ସଫଳ ହେଲାନାହିଁ । ଶେଷରେ ସେ ଏକ ପ୍ରସ୍ତାବ ଦେଲେ । ତାଙ୍କର ପ୍ରସ୍ତାବ ଥିଲା, ରାଣୀ ସମୁଦ୍ରର ବେଳାଭୂମିରେ ତିନି ବର୍ଷ ବାସ କରିବେ । ସେହି ବେଳାଭୂମିରେ ଅଶୋକବନ ରହିବ । ଏହା କରାଗଲେ ରାଣୀ ସନ୍ତାନବତୀ ହୋଇପାରନ୍ତି । ଏହି ପ୍ରସ୍ତାବ ପାଇ ସାରିଲା ପରେ ତୋର ପିତା ଦନ୍ତପୁରରେ ଏହି ବେଳାପ୍ରାସାଦକୁ ନିର୍ମାଣ କରାଇଲେ । ଚାରି ଯୋଜନ ଦୈର୍ଘ୍ୟ ଏବଂ ଚାରି ଯୋଜନ ପ୍ରସ୍ଥରେ ଯେଉଁ ଅଶୋକବନ ଦେଖୁଛୁ ତାହା ମାତ୍ର ଏଗାର ବର୍ଷ ପୂର୍ବରୁ ରୋପିତ ହୋଇଅଛି । ମୁଁ ବେଳା ପ୍ରାସାଦରେ ତିନି ବର୍ଷ ବାସ କଲି । ତୋ'ର ପିତା ଅଧାଅଧି ଦିନ ଏଠାରେ ରହୁଥିଲେ, ଆଉତକ ଦିନ କଳିଙ୍ଗ ନଗରୀରେ ରହୁଥିଲେ । ରାଜବୈଦ୍ୟଙ୍କର ଚିକିତ୍ସା ସଫଳ ହେଲା । ଅରିହନ୍ତମାନଙ୍କର ଆଶୀର୍ବାଦରୁ ତୁ ଜନ୍ମ ପାଇଲୁ । କ୍ଷାରଯୁକ୍ତ ସାମୁଦ୍ରିକ ଜଳ, କ୍ଷାରଯୁକ୍ତ ସାମୁଦ୍ରିକ ପବନ, ଅଶୋକ ବୃକ୍ଷର ସାନ୍ନିଧ, ଦନ୍ତପୁରର ସାଗରର ବେଳା ତୋର ଜନ୍ମପାଇଁ ଅନିବାର୍ଯ୍ୟଭାବେ ସହାୟକ ହୋଇଥିଲେ । ଏହି ଐତିହାସିକ ପୃଷ୍ଠଭୂମିରେ ତୋର ନାମକରଣ ହୋଇଛି । ସଂସ୍କୃତରେ ତୋର ନାମ 'କ୍ଷାରବେଳ' । ପ୍ରକୃତରେ ଆମେ ତାକୁ 'ଖାରବେଳ' । ଏହା ହେଲା ତୋର ଜନ୍ମ ରହସ୍ୟ, ଆଉ ତୋର ଜୀବନୀରେ ଦନ୍ତପୁରର ବିଶିଷ୍ଟତା ।

କ୍ଷାରବେଳଙ୍କ ଜନ୍ମ ପୂର୍ବରୁ ବହୁ ରାଜା ଓ ରାଜବଂଶ କଳିଙ୍ଗରେ ରାଜପଣ କରିଥିଲେ । ପୁରାଣ ଅନୁସାରେ ମହାଭାରତ ଯୁଦ୍ଧଠାରୁ ମଗଧର ନନ୍ଦବଂଶ ରାଜା ମହାପଦ୍ମନନ୍ଦଙ୍କ ପର୍ଯ୍ୟନ୍ତ କଳିଙ୍ଗରେ ୩୨ ଜଣ ରାଜା ରାଜତ୍ୱ କରି ସାରିଥିଲେ । ଏହି ସମୟ ମଧ୍ୟରେ ମଗଧ ରାଜାଙ୍କ ଦ୍ୱାରା କଳିଙ୍ଗ ଜିନ ଅପହରଣ ଏବଂ ସମ୍ରାଟ ଅଶୋକଙ୍କ ଦ୍ୱାରା ଦ୍ୱିତୀୟ ଥର ପାଇଁ କଳିଙ୍ଗର ପତନ କଳିଙ୍ଗବାସୀଙ୍କ ପକ୍ଷେ ଅତ୍ୟନ୍ତ ମର୍ମନ୍ତୁଦ ଘଟଣା । ଇତିହାସର ଘଟଣାବଳୀରୁ ଜଣାପଡ଼େ, ବୌଦ୍ଧ ଧର୍ମ ବହୁ ଶତାବ୍ଦୀ ଧରି କଳିଙ୍ଗର ପ୍ରମୁଖ ତଥା ରାଜଧର୍ମ ଥିଲା । ଖାରବେଳ ଜୈନ ଧର୍ମାବଲମ୍ବୀ ଥିଲେ ବୋଲି ହାତୀଗୁମ୍ଫା ଶିଳାଲିପିରୁ ଜଣାଯାଏ ।

ଅବୈଦିକ ଧର୍ମ ବିଶ୍ୱାସ । 'ସ୍ୱର୍ବାକ'ର ମୂଳଦୁଆ ଉପରେ ମୁଣ୍ଡଟେକି ଉଠିଥିଲା ନିରୀଶ୍ୱରବାଦୀ ଜୈନ ଧର୍ମ; ଉଚ୍ଚ–ନୀଚ, ଭେଦ–ଶୂନ୍ୟ ସରଳ ଆଚରଣ ପଦ୍ଧତି ଉପରେ ପ୍ରତିଷ୍ଠିତ ହୋଇଥିବା ହେତୁ କଳିଙ୍ଗର ଅବହେଳିତ ଶ୍ରେଣୀ ମଧ୍ୟରେ ଏହି

ନିରୀଶ୍ୱରବାଦୀ ଧର୍ମ ସ୍ୱତଃ ଗ୍ରହଣୀୟ ହୋଇଯାଇଥିଲା । ଅଧିକନ୍ତୁ ଜୈନ ଧର୍ମର ପ୍ରବର୍ତ୍ତକ ରାଜକୁଳସମ୍ଭୂତ ମହାବୀରଙ୍କର ପିତା କଳିଙ୍ଗ ରାଜାଙ୍କର ବନ୍ଧୁ ଥିବାରୁ ଏବଂ କଳିଙ୍ଗ ରାଜାଙ୍କ ନିମନ୍ତ୍ରଣ ପାଇ ମହାବୀର କଳିଙ୍ଗକୁ ଜୈନ ଧର୍ମ ପ୍ରଚାରପାଇଁ ଆସିଥିଲେ । ଏହି ଐତିହାସିକ କାରଣରୁ କଳିଙ୍ଗରେ ଜୈନ ଧର୍ମ ବହୁ ଶତାବ୍ଦୀ ଧରି ମୁଖ୍ୟ ଧର୍ମ ରୂପେ ପ୍ରଭାବ ବିସ୍ତାର କରିଥିଲା । କଳିଙ୍ଗ ଜିନ ଥିଲେ କଳିଙ୍ଗବାସୀଙ୍କ ପକ୍ଷେ ରାଷ୍ଟ୍ରୀୟତାର ପ୍ରତୀକ, ଯେପରି ସମ୍ପ୍ରତି ଶ୍ରୀଜଗନ୍ନାଥ ଓଡ଼ିଆମାନଙ୍କର ସ୍ୱାଭିମାନର ପ୍ରତୀକ । ଖ୍ରୀଷ୍ଟପୂର୍ବ ସମୟରେ କଳିଙ୍ଗ ଜିନ, ଦନ୍ତପୁର, ପରେ ଓଡ଼ିଶା ଭୂଖଣ୍ଡରେ ଜୈନ ଧର୍ମ ସାଙ୍ଗକୁ ବୌଦ୍ଧଧର୍ମର ପ୍ରସାର, ବୌଦ୍ଧଧର୍ମ ବିଲୋପ ପରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଏବଂ ଆଦିବାସୀ ପୂଜିତ ନୀଳମାଧବ ପରେ ଆର୍ଯ୍ୟ ଅନାର୍ଯ୍ୟ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଆରାଧିତ ଶ୍ରୀଜଗନ୍ନାଥରେ ରୂପାନ୍ତରିତ ଏ ସମସ୍ତ ଘଟଣା ଶତାବ୍ଦୀ ବ୍ୟାପି ଧାର୍ମିକ ବିବର୍ତ୍ତନର ଫଳ । ଏକଦା ପ୍ରେତ ଯୁଗରେ ମ୍ଳେଚ୍ଛଦେଶ ରୂପେ ବିବେଚିତ ହେଉଥିବା କଳିଙ୍ଗର ସାହସିକ (କଳିଙ୍ଗାଃ ସାହାସିକାଃ) ଅଧିବାସୀ ଇତିହାସର ସୁବ ଧରି ଖାରବେଳଙ୍କ ନେତୃତ୍ୱରେ ସାରା ଭାରତବର୍ଷରେ ଦିଗ୍‌ବିଜୟୀ ଜାତିରୂପେ ଖ୍ୟାତି ଅର୍ଜନ କରିଥିଲେ ।

ବିଶ୍ୱ ଇତିହାସରେ ସ୍ୱଳ୍ପ ଚର୍ଚ୍ଚିତ କଳିଙ୍ଗାଧିପତି ମହାରାଜା ଖାରବେଳ ଏକ ଦୁର୍ଲ୍ଲଭ ବ୍ୟକ୍ତିତ୍ୱ ଏବଂ ମହାନ ରାଷ୍ଟ୍ରପୁରୁଷ । ମଗଧ ବିରୁଦ୍ଧରେ ପ୍ରତିହିଂସା ସାଧନ ପୂର୍ବକ ତାକୁ ପରାସ୍ତକରି ବହୁ ପୂର୍ବରୁ ଅପହୃତ କଳିଙ୍ଗ ଜିନ ମୂର୍ତ୍ତି ଫେରାଇ ଆଣି କଳିଙ୍ଗରେ ପୁନଃ ପ୍ରତିଷ୍ଠିତ କରାଇଲେ । ଶିଶୁପାଳଗଡ଼ ଖାରବେଳଙ୍କ ସମୟରେ କଳିଙ୍ଗ ନଗର ବୋଲି ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକମାନଙ୍କର ମତ । ଏହିଠାରେ ଖାରବେଳଙ୍କର ରାଜଧାନୀ ଥିଲା । ଖାରବେଳଙ୍କ ଦ୍ୱାରା ନିର୍ମିତ ମୁକ୍ତ ରଙ୍ଗମଞ୍ଚ ଏବେ ବି ଶିଶୁପାଳଗଡ଼ ମାଟି ତଳେ ପୋତି ହୋଇ ରହିପାରେ ବୋଲି ଐତିହାସିକମାନେ କହନ୍ତି । ଖାରବେଳ ଭାରତର ବିଭିନ୍ନ ରାଜ୍ୟ ଜୟକରି କଳିଙ୍ଗର ବୀରତ୍ୱ ଓ ଖ୍ୟାତି ପ୍ରତିଷ୍ଠା କରିଥିଲେ । ତାଙ୍କ ରାଜତ୍ୱର ଦ୍ୱିତୀୟ ବର୍ଷରେ କର୍ଣ୍ଣାଟକର ସାତକର୍ଣ୍ଣିଙ୍କୁ ପରାସ୍ତ କରି ଋଷିକ ନଗରକୁ ଭୟ ବିହ୍ୱଳିତ କରିଥିଲେ । ଚତୁର୍ଥ ବର୍ଷ ରାଷ୍ଟ୍ରିକ ଓ ଭୋଜିକମାନଙ୍କୁ ପରାସ୍ତ କରିଥିଲେ । ଦ୍ୱାଦଶ ବର୍ଷ ସେ ଉତ୍ତର ପଥର ରାଜାମାନଙ୍କୁ ପରାସ୍ତକରି ମଗଧରେ ପ୍ରବେଶ କରିଥିଲେ ଏବଂ ଅପହୃତ କଳିଙ୍ଗ ଜିନ ରାଜଧାନୀକୁ ଫେରାଇ ଆଣି ପୁନଃ ପ୍ରତିଷ୍ଠା କରିଥିଲେ, ଉଦୟଗିରି ହାତୀଗୁମ୍ଫା ବିବରଣୀରୁ ଏ ସମସ୍ତ ଜଣାପଡ଼େ ।

ଖାରବେଳଙ୍କ ଦିଗ୍‌ବିଜୟ ଥିଲା ଐତିହାସିକ ଦୃଷ୍ଟିରୁ ଯୁଗାନ୍ତକାରୀ ଓ ଅଦ୍ଭୁତ ଧରଣର । ସେତେବେଳେ ମଗଧରେ ଶୁଙ୍ଗବଂଶ ରାଜତ୍ୱ କରୁଥିଲେ । ମଥୁରା ଓ ଉତ୍ତର ଭାରତର ଅନ୍ୟାନ୍ୟ ରାଜ୍ୟ ଯବନମାନଙ୍କ ଦ୍ୱାରା କବଳିତ । ଯବନରାଜ ଦ୍ୱିମିତ ମଥୁରାର ରାଜା ଆଦିତ୍ୟସେନଙ୍କୁ ହତ୍ୟା କରି ନିଜେ ସିଂହାସନ ଅଧିକାର କରି ରାଜପଣ କରିଥିଲେ । ଆଦିତ୍ୟ ସେନଙ୍କ ପୁତ୍ର ଇନ୍ଦ୍ରସେନ ଛଦ୍ମବେଶରେ ଏକ ଶ୍ରମଣ କେନ୍ଦ୍ରରେ ଆଶ୍ରୟ ନେଇଥାନ୍ତି । ଖାରବେଳ ଉତ୍ତର ଭାରତ ବିଜୟ ପାଇଁ ଅଭିଯାନ କରି ମଥୁରାରେ ପହଞ୍ଚିଲେ । ଯବନରାଜ ଦ୍ୱିମିତଙ୍କୁ ପରାସ୍ତ କରି ମଥୁରା ଜୟ କଲେ ଏବଂ ଯବନଙ୍କ ଦ୍ୱାରା ନିହତ ରାଜା ଆଦିତ୍ୟସେନଙ୍କ ପୁତ୍ର ଇନ୍ଦ୍ରସେନଙ୍କୁ ମଥୁରାର ରାଜା ରୂପେ ଅଭିଷେକ କରାଇଲେ । ଖାରବେଳ ଯବନମାନଙ୍କୁ ଭାରତ ଭୂମିରୁ ବିତାଡ଼ିତ କରି ହିନ୍ଦୁକୁଶ ଆରପଟେ ଛାଡ଼ି ଦେଇଥିଲେ ଏବଂ ଯବନମାନଙ୍କ ଦ୍ୱାରା ପୂର୍ବରୁ ବିତାଡ଼ିତ ରାଜା ଓ ରାଜବଂଶର ଉତ୍ତରାଧିକାରୀମାନଙ୍କୁ ସେମାନଙ୍କ ସ୍ୱ ସ୍ୱ ରାଜ୍ୟରେ ଅଭିଷିକ୍ତ କରାଇଥିଲେ । ମଗଧରୁ କଳିଙ୍ଗ ଜିନ ଉଦ୍ଧାର ପାଇଁ ଯୁଦ୍ଧଯାତ୍ରା କଲେ । ଏପରି ଦିଗ୍‌ବିଜୟୀ ରାଜା ପୃଥିବୀ ଇତିହାସରେ ବିରଳ ଯେ ଆଦର୍ଶ ପ୍ରତିଷ୍ଠା ପାଇଁ ରାଜ୍ୟ ଜୟ କରେ, ରାଜ୍ୟ ଅଧିକାର ପାଇଁ ନୁହେଁ । ଖାରବେଳ କଳିଙ୍ଗ ସେନା ଦ୍ୱାରା ଭାରତବର୍ଷର ବିଭିନ୍ନ ରାଜ୍ୟରୁ ଯବନମାନଙ୍କୁ ତଡ଼ି ଦେଇ ଦେଶୀୟ ରାଜାମାନଙ୍କୁ ରାଜ୍ୟ ଫେରାଇ ଦେଇଥିଲେ । ଏହାଦ୍ୱାରା ଭାରତବର୍ଷରେ ତତ୍କାଳୀନ ଭାରତୀୟ ଧର୍ମ ଓ ସଂସ୍କୃତି ସମୂହ ବୈଦେଶିକ ପ୍ରଭାବରୁ ରକ୍ଷା ପାଇଥିଲା । ଅନ୍ୟାୟ ବିରୁଦ୍ଧରେ ଅସ୍ତ୍ରଧାରଣ କରି ଦୁର୍ବଳକୁ ରକ୍ଷା କରିବା ହେଉଛି କ୍ଷାତ୍ର ଧର୍ମ । ଖାରବେଳ ଯଥାର୍ଥରେ କ୍ଷତ୍ରିୟ ନରପତି ଥିଲେ । ମଥୁରାକୁ ଯବନମାନଙ୍କ ହାତରୁ ଉଦ୍ଧାର କଲାପରେ ଖାରବେଳ କଳିଙ୍ଗସେନା ସହ କଳିଙ୍ଗ ନଗରୀକୁ ପ୍ରତ୍ୟାବର୍ତ୍ତନ କଲେ । ଦିଗ୍‌ବିଜୟ ଶେଷରେ ତାର ସ୍ମାରକୀ ସ୍ୱରୂପ ମହାରାଜା ଖାରବେଳ ଏକ ମହାବିଜୟ ପ୍ରାସାଦ ନିର୍ମାଣ କରାଇଥିଲେ । ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ମହାରାଜ ଖାରବେଳ ରାଜପଦ ପରିହାର କରି ଜୈନ୍ୟ ସନ୍ନ୍ୟାସୀ ହୋଇଗଲେ ଏବଂ ଜୈନ ଧର୍ମ ପ୍ରଚାର ଓ ପ୍ରସାରରେ ଆତ୍ମନିଯୋଗ କଲେ । ରାଜା ଥିବାବେଳେ ଜୈନ ସନ୍ନ୍ୟାସୀମାନଙ୍କ ପାଇଁ କୁମାରୀ (ଉଦୟଗିରି) ପର୍ବତରେ ଗୁମ୍ଫା ନିର୍ମାଣ କରାଇଥିଲେ । ସେ ଗୁମ୍ଫାଗୁଡ଼ିକ ଏବେ ବି ବିଦ୍ୟମାନ ଥାଇ ମହାରାଜା ଖାରବେଳଙ୍କ ଯଶ ଓ କୀର୍ତ୍ତିଗାନ କରୁଛନ୍ତି । ପ୍ରତ୍ୟେହ ଶହ ଶହ ପର୍ଯ୍ୟଟକ ଦେଶ ବିଦେଶରୁ ଏହି ଗୁମ୍ଫାଗୁଡ଼ିକର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଦେଖିବା ପାଇଁ ଆସୁଛନ୍ତି । ଏଗୁଡ଼ିକ ଉତ୍କଳୀୟ ଜୈନ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ପ୍ରକୃଷ୍ଟ ନିଦର୍ଶନ ।

ଖାରବେଳ ଜଣେ ସଙ୍ଗୀତ, କଳା, ସଂସ୍କୃତି ପ୍ରେମୀ ମହାରାଜା ଥିଲେ, ନିଜେ ବି ଜଣେ ଯଶସ୍ୱୀ ସଙ୍ଗୀତଜ୍ଞ, ବାଦ୍ୟଯନ୍ତ୍ର ବିଶାରଦ ଓ କଳାକାର ଥିଲେ । ଜୈନ ଧର୍ମାବଲମ୍ବୀ ହୋଇଥିଲେ ମଧ୍ୟ ହିନ୍ଦୁ ଓ ବୌଦ୍ଧ ଧର୍ମର ସ୍ୱାଭାବିକ ଅଭିବୃଦ୍ଧିରେ ହସ୍ତକ୍ଷେପ କରୁନଥିଲେ । ମହାମେଘବାହନ ଖାରବେଳ ଧର୍ମନିରପେକ୍ଷତା, ଭାରତୀୟ ରାଜଧର୍ମକୁ ଆଚରଣ କରି ଦେଖାଇ ଯାଇଛନ୍ତି । ଜୈନ ହେଲେ ମଧ୍ୟ ଭାରତୀୟ ଆର୍ଯ୍ୟ ସଂସ୍କୃତିର ମୂଳଭିତ୍ତି ବର୍ଣ୍ଣାଶ୍ରମକୁ ଖାରବେଳ ଅକ୍ଷରେ ଅକ୍ଷରେ ପାଳନ କରି ଯାଇଛନ୍ତି । ଆର୍ଯ୍ୟ ଚତୁ ବର୍ଣ୍ଣାଶ୍ରମ—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଯତିବୃତ୍ତକୁ ଖାରବେଳ ନିଜ ଜୀବନରେ ଆଚରଣ କରି ଶେଷ ଜୀବନ ଜୈନ ଶ୍ରମଣ ଭାବେ ବିତାଇ ଥିଲେ । ଉତ୍ତର ପିଢ଼ିକୁ ସ୍ଥାନ ଛାଡ଼ି ଦେବାପାଇଁ ଖାରବେଳଙ୍କ ଦ୍ୱାରା ଆଚରିତ ରାଜନୀତିରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ ଆଜିର ରାଷ୍ଟ୍ରପୁରୁଷମାନେ ଶିକ୍ଷା କରିବେ କି ? ତାଙ୍କ ରାଜତ୍ୱରେ କଳିଙ୍ଗର କଳା, ସାହିତ୍ୟ, ସଙ୍ଗୀତ, ସଂସ୍କୃତି ଉନ୍ନତିର ଶୀର୍ଷ ଦେଶରେ ଉପନୀତ ହୋଇଥିଲା । ଉଦୟଗିରିରେ ଅବସ୍ଥିତ ଖାରବେଳଙ୍କ ସମୟର ମୁକ୍ତ ରଙ୍ଗମଞ୍ଚ—ପ୍ରେକ୍ଷାଳୟ

ଏହାର ମୂକ ସାକ୍ଷୀରୂପେ ବିଦ୍ୟମାନ । ତତ୍କାଳୀନ ବିଶ୍ୱର ଏହା ଅଦ୍ୱିତୀୟ ଥିଲା । ଏକାମ୍ର କ୍ଷେତ୍ର ଭୁବନେଶ୍ୱର ଯୁଗେଯୁଗେ ଓଡ଼ିଶାର ରାଜଧାନୀ । ତୋଷାଳି (ଧଉଳି ସନ୍ନିକଟ) କଳିଙ୍ଗନଗର (ଶିଶୁପାଳଗଡ ମହାଭୋଇ ଶାସନ ଅଞ୍ଚଳ), ଖଣ୍ଡଗିରି ଉଦୟଗିରି (କୁମାର କୁମାରୀ ପର୍ବତ) ଜୈନ ଗୁମ୍ଫାର ଅବସ୍ଥିତି ସୂଚନା ଦିଏ ଯେ ଏହି ଅଞ୍ଚଳରେ କଳିଙ୍ଗର ଜୈନ ମହାରାଜା ମହାମେଘବାହନ ଐର ଖାରବେଳଙ୍କର ରାଜଧାନୀ ନିଶ୍ଚୟ ଥିଲା ଏବଂ ତାଙ୍କର ଜନ୍ମସ୍ଥାନ କ୍ଷାର ଜଳବାୟୁ ନିସେବିତ ସାଗର ବେଳା (ଦନ୍ତପୁର) ଯାହାକି ରାଜଧାନୀ ଭୁବନେଶ୍ୱରର ସମୀପବର୍ତ୍ତୀ ହୋଇଥିବ—ଏଥିରେ ସନ୍ଦେହ ନାହିଁ ।

ପୁରାଣ ପ୍ରସିଦ୍ଧ କଳିଙ୍ଗବାସୀ ଓଡ଼ିଆ ଜାତିର ଅପହୃତ ସ୍ୱାଭିମାନ ଓ ଆତ୍ମ ସମ୍ମାନର ସଂସ୍ଥାପକ ଏହି ଆଦି ରାଷ୍ଟ୍ରପୁରୁଷ ଏବଂ ଦିଗ୍‌ବିଜୟୀ ବୀର ପୁଙ୍ଗବ ଆଜିଠାରୁ ୨୦୨୬ ବର୍ଷ ପୂର୍ବେ ଏହି ପୁଣ୍ୟ ମାଟିରେ ଭୂମିଷ୍ଠ ହୋଇ ସହନଶୀଳ ସମନ୍ୱୟବାଦୀ ମହାନ ଉତ୍କଳୀୟ ସଂସ୍କୃତିର ମୂଳଦୁଆ 'ପକାଇଥିଲେ—ଏହା ପ୍ରତ୍ୟେକ ଓଡ଼ିଆ ପକ୍ଷେ ବିନମ୍ର ଓ ଭକ୍ତିପୂତ ଭାବେ ସ୍ମରଣ କରିବା ଏକାନ୍ତ କର୍ତ୍ତବ୍ୟ ।

ପ୍ଲଟ ନମ୍ବର ଏନ୍/୩-୨୩୭,
ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୫ ।




ସୂଚନା ଭବନଠାରେ ଆୟୋଜିତ ଦୈନିକ ଖବର କାଗଜ 'ଉତ୍କଳ ମେଲ୍'ର ତୃତୀୟ ବାର୍ଷିକ ଉତ୍ସବକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି (୧୦/୬) ।



## ସିଟୁ ପ୍ରଧାନ ହସୁଛି

ଫୁଲବାଣୀ ଜିଲ୍ଲାର ବଣ ପାହାଡ଼ ଘେରା ଆଦିବାସୀ ଅଧ୍ୟୁଷିତ ଉପଖଣ୍ଡ ବାଲିଗୁଡ଼ା । ଯାହାର ଅନତି ଦୂରରେ ଅବସ୍ଥିତ ନୂଆଗାଁ ବ୍ଲକ । ଏହାର ଅନ୍ତର୍ଗତ ଆଦିବାସୀ ପଲ୍ଲୀ 'ମୁଣ୍ଡାରଗାଁ' । ଏହି କାହାଣୀ ସେ ଗାଁର ଏକ ଆଦିବାସୀ କନ୍ଧ ସିଟୁ ପ୍ରଧାନର । ଯାହାର ଜୀବନ ଥିଲା ମଦ ଓ ଜୀବୀକା ଥିଲା ଡଙ୍ଗର ଚାଷ ଓ ପୋଡୁ ଚାଷ ।

ହେଲେ ସବୁଦିନ ସମାନ ଯାଏନି । ଦିନେ ସକାଳୁ ସକାଳୁ ତା'ଘରେ ହାଜର ହେଲେ ନୂଆଗାଁର ବ୍ଲକ ମଙ୍ଗଳ ସମ୍ପ୍ରସାରଣ ଅଧିକାରୀ ଓ ଭାରତୀୟ ଷ୍ଟେଟ ବ୍ୟାଙ୍କର କ୍ଷେତ୍ର ଅଧିକାରୀ । ଶୁଣିଲେ ସିଟୁ ପ୍ରଧାନର ଇତିବୃତ୍ତି । ସେମାନଙ୍କ ଆଗରେ ସିଟୁ ଥିଲା ଏକ ଚ୍ୟାଲେଞ୍ଜ । ସିଟୁକୁ ଆଦିବାସୀ ଉନ୍ନୟନ ଯୋଜନାରେ ସାମିଲ କରି ତା' ଦାରିଦ୍ର୍ୟ ସବୁଦିନ ପାଇଁ ଦୂରେଇ ଦେବାକୁ ହେବ । ତା' ପୁଅ-ଝିଅଙ୍କୁ ସୁଶିକ୍ଷିତ-ସୁନାଗରିକ କରିବାକୁ ହେବ ।

ସିଟୁର ସମ୍ବଳ କହିଲେ ଥିଲା ଅଢ଼େଇ ଏକର ସଦର ଜମି । ବଳଦ ହଳେ ନଥିବାରୁ ସେ ସଦର ଚାଷ ଛାଡ଼ି କରୁଥିଲା ଡଙ୍ଗର ଚାଷ ଓ ପୋଡୁ ଚାଷ । ସିଟୁ ପରିବାରକୁ ଋଣ ଦେବା ପାଇଁ ସ୍ଥିର ହେଲା ଓ ଏହି ଯୋଜନାରେ ସିଟୁକୁ ଦୁଇହଜାର ଟଙ୍କାର ହଳେ ବଳଦ ମିଳିଲା । କାଳିଆ, କସରା ବଳଦଙ୍କୁ ଧରି ସିଟୁ ଡଙ୍ଗର ଚାଷ ଓ ପୋଡୁ ଚାଷ ଛାଡ଼ି ସଦର ଜମିରେ ମନପ୍ରାଣ ଦେଇ ଲାଗି ପଡ଼ିଲା । ଜମି ତାକୁ ଦେଲା ବର୍ଷକୁ ଦୁଇ-ଦୁଇଟା ଫସଲ ।

ସିଟୁର ବଡ଼ ଝିଅ ଥିଲା ଖଲି ସିଲେଇରେ ନିପୁଣା । ତାକୁ ସେଇ ଯୋଜନାରେ ବାରଶହ ଟଙ୍କା ଋଣ ଯୋଗାଇ ଦିଆଗଲା । ସୋସାଇଟିକୁ ଖଲି ବିକି ସେ ପ୍ରତି ସପ୍ତାହରେ ପାଇଲା ଦୁଇଶହ ପଚାଶ ଟଙ୍କା ।

ଅଞ୍ଚ ବହୁତେ ସିଲାଇ କାମ ଜାଣିଥିଲା, ସିଟୁର ସାନ ଝିଅ ଇମାମତୀ । ସେ ବା କାହିଁକି ସରକାରୀ ଯୋଜନାରୁ ବାଦ୍ ପଡ଼ନ୍ତା । ତା'ର ମଧ୍ୟ ସ୍ୱପ୍ନ ଥିଲା, କିଛି ସିଲାଇ କରି ପରିବାର ପାଇଁ ଦୁଇ ପଇସା ରୋଜଗାର କରିବ । ତା'ର ସେ ସ୍ୱପ୍ନ ସେ ଦିନ ରୂପ ନେବାକୁ ବସିଲା, ଯେଉଁ ଦିନ ବ୍ୟାଙ୍କ ତରଫରୁ ତାକୁ ତା'ର ମନପସନ୍ଦ ସିଲାଇ ମେସିନ୍ ଓ କପଡ଼ା ଋଣ ଆକାରରେ ଯୋଗାଇ ଦିଆ ଗଲା । ଇମାମତୀ ଘରେ ବସି ଶାଢ଼ି ଯାକେଟ ପୋଷାକ ପତ୍ର ସିଲାଇ କରି ବେଶ୍ କିଛି ପଇସା ତା' ପରିବାର ପାଇଁ ରୋଜଗାର କରିପାରିଲା ।

ଏକୁ ଆଁରେକ ବଳି । ସିଟୁ ପରିବାର ଏକମାତ୍ର ପୁଅ ନଗିଆ ଆଜି ବାବୁ ନଗେନ୍ଦ୍ର ପ୍ରଧାନ । ଏକ ଡିଗ୍ରୀଧାରୀ ଯୁବକ ଓ ବେଲଘରର ଶିକ୍ଷାକର୍ମୀ ଭାବେ ରୋଜଗାର କ୍ଷମ ।

ସିଟୁ ପରିବାରକୁ ୧୯୯୦ ମସିହା ମଧ୍ୟରେ ଆଠହଜାର ଟଙ୍କା ଋଣ ଆକାରରେ ବ୍ୟାଙ୍କ ତରଫରୁ ଯୋଗାଇ ଦିଆ ଯାଇଥିଲା ଏବଂ ତାହାର ଅର୍ଦ୍ଧେକ ସେ ରିହାତି ଆକାରରେ ପାଇଥିଲା ବାଲିଗୁଡ଼ା ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାର ପରିଯୋଜନା ପ୍ରଶାସକଙ୍କଠାରୁ । ଆଜି ସେହି ପରିବାରର ବାର୍ଷିକ ଆୟ ଶହେ ହଜାର ଟଙ୍କାରୁ ଅଧିକ ।

ଅତୀତର ସିଟୁ ଓ ଆଜିର ସିଟୁ ପ୍ରଧାନ ମଧ୍ୟରେ ଅନେକ ତଫାତ୍ । ସିଟୁ ପରିବାରରେ ଆଜି ହସର ଜୁଆର । ଏ ମଧ୍ୟରେ ସିଟୁ କିଛି ସମ୍ପଦ ଠୁଳ କଲାଣି । ଦୁଇ ଝିଅଙ୍କ ପାଇଁ ସେ ଏବେ ଉପଯୁକ୍ତ ବରପାତ୍ରର ସନ୍ଧାନୀ । ଆଶା ତା'ର ଫଳବତୀ ହେଉ ଏବଂ ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା, ବ୍ଲକ ଓ ବ୍ୟାଙ୍କ ଏହିପରି ଅନେକ ସିଟୁଙ୍କୁ ଆଦିବାସୀ ଯୋଜନାର ଆଲୋକକୁ ଆଣନ୍ତୁ ଏହାହିଁ କାମନା ।

---


**ଅଶୋକ କୁମାର ପାଢ଼,**
**ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,**
**ବାଲିଗୁଡ଼ା ।**

# ସବୁଜ ସାକ୍ଷର ଆମ କେନ୍ଦୁଝର

ନିବିଡ଼ ଅନ୍ଧାର ମଧ୍ୟରୁ ଆଲୋକକୁ ଜନ୍ମ ଦେବା–ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ। ସାତ ସମୁଦ୍ର ତେର ନଈ ପାର ହେବା ପରେ ଯାଇ ପଡ଼ିବ ପୁଷ୍କରଣୀ। ତା' ମଧ୍ୟରେ ସାତ ତାଳ ପାଣି, ପାଣି ମଧ୍ୟରେ ସାତ ତାଳ ପଙ୍କ–ତା' ମଧ୍ୟରେ ଫରୁଆ–ଫରୁଆ ଭିତରେ ବୁଢ଼ୀ ଅସୁରୁଣୀର ଜୀବନ। ତାକୁ ମାରିଲେ ଚାରି ଲକ୍ଷ ସତୁରୀ ହଜାର ଚାରିଶହ ଛତିଶ ଜଣ ମୁକ୍ତି ପାଇବେ। ମଣିଷ ହେବେ। ସୂର୍ଯ୍ୟଙ୍କର ସୁନେଲି କିରଣର ସ୍ୱାଦ ପାଇବେ। ଏଥିପାଇଁ ଏକ ବିରାଟ ସର୍ତ୍ତ, ସର୍ତ୍ତ ମାତ୍ର ଗୋଟିଏ ବର୍ଷର। ତା' ପରେ ସେ ଯେଉଁ ମାନସ ପୁତ୍ର ଜନ୍ମ ନେବ–ପାଦରେ ନୂପୁର ଥିବ। କ୍ଷଣ କ୍ଷଣ ନାଚୁଥିବ ମାଦଳର ତାଳେ ତାଳେ, ହାତରେ ଧନୁଶର, ଘନ ଜଙ୍ଗଲଭରା ପାହାଡ଼ ପ୍ରାଚୀର ଘେରା ସୁଶୋଭିତ "ସବୁଜ ସାକ୍ଷର ଆମ କେନ୍ଦୁଝର"।

ରାଜ୍ୟର ଏକ ଆଦିବାସୀ ଅଧ୍ୟୁଷିତ ଅନୁନ୍ନତ ଉପାନ୍ତ ଜିଲ୍ଲା କେନ୍ଦୁଝର। ପ୍ରଚୁର ପ୍ରାକୃତିକ ସମ୍ପଦରେ ଭରପୂର, ପୁନତୋୟା ସୁରଗଙ୍ଗା ଚିରସ୍ରୋତା ବୈତରଣୀ ନଦୀର ଉତ୍ପତ୍ତିଛଳି। ହଠାତ୍ ଝଡ଼ର ଆଗମନରେ ଶାନ୍ତ ଗମ୍ଭୀର ସମୁଦ୍ରର ବୁକୁ ବିହରି ଉଠିଲାପରି, ଜିଲ୍ଲାର ପ୍ରତ୍ୟେକ ପୁରପଲ୍ଲୀ ଏବଂ ପ୍ରତ୍ୟେକ କୋଣରେ ଏକ ନୂତନ ଶିହରଣ, ବାତାବରଣରେ ନୂତନ ଆଲୋଡ଼ନ ଖେଳାଇ ଦେଇଛି ଜିଲ୍ଲାପାଳ ଶ୍ରୀ ଅରୁଣ କୁମାର ପଣ୍ଡାଙ୍କର ମାନସ ସନ୍ତାନ। ଏହି ଜିଲ୍ଲାକୁ ଜାତୀୟ ସାକ୍ଷରତା ମିସନ୍ ଆନୁକୂଲ୍ୟରେ ଚାଲିଥିବା ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ ମାଧ୍ୟମରେ ଏକ ସମ୍ପୂର୍ଣ୍ଣ ସାକ୍ଷର ଜିଲ୍ଲାରେ ପରିଣତ କରିବା ପାଇଁ ବଳିଷ୍ଠ ଘୋଷଣା "ସବୁଜ ସାକ୍ଷର ଆମ କେନ୍ଦୁଝର"। ଏଥିପାଇଁ ଯୁଦ୍ଧଂ ଦେହି ଡାକରା। ଇତିହାସର ସବୁ ଆସ୍ଥ ଅଭିମାନ, ଆତ୍ମ ବିଶ୍ୱାସ ଓ ପ୍ରଚଣ୍ଡ ପୌରୁଷତ୍ୱର ଅଭିମାନରେ ହୁଙ୍କାର ଦେଇ ବାହାରିଛନ୍ତି–ବହୁ ବାଧା ବିଘ୍ନ ସତ୍ତ୍ୱେ ପ୍ରାୟ ୫୦ ହଜାରରୁ ଊର୍ଦ୍ଧ୍ୱ ସ୍ୱେଚ୍ଛାସେବୀ, ଯେଉଁମାନଙ୍କର ସମ୍ମିଳିତ ନିଷ୍ଠାପର ଉଦ୍ୟମ ଏହି ଅଭିଯାନକୁ ଶୀର୍ଷ ସ୍ଥାନରେ ପହଞ୍ଚାଇବାକୁ ସକ୍ଷମ ହୋଇଛନ୍ତି। ୧୯୯୨ ମସିହା ଜୁନ ମାସ ୨୨ ତାରିଖ ଦିନ ପବିତ୍ର ଶିକ୍ଷାଦାନ କାର୍ଯ୍ୟକ୍ରମ ଆରମ୍ଭ ହେବା ଦିନଠାରୁ ଏ ପର୍ଯ୍ୟନ୍ତ ଜିଲ୍ଲାରେ ପ୍ରାୟ ୨୦ ହଜାରରୁ ଊର୍ଦ୍ଧ୍ୱ ଶିକ୍ଷା କେନ୍ଦ୍ର ମାଧ୍ୟମରେ ଶିକ୍ଷାଦାନ କାର୍ଯ୍ୟକ୍ରମ ଆଗେଇ ଚାଲିଛି।

ଚମ୍ପୁଆ ଉପଖଣ୍ଡରେ ଏଥିପାଇଁ ବିଶେଷ ଉତ୍କଟତା ଉପଲବ୍ଧି ହୁଏ। ଏହି ସବଡିଭିଜନରେ ଥିବା ପାଞ୍ଚ ଗୋଟି ପ୍ରକଳ୍ପ ମଧ୍ୟରୁ ଚମ୍ପୁଆ ପ୍ରକଳ୍ପରେ ୧୯୫୦, ଝୁମ୍ପୁରାରେ ୧୫୦୫, ଯୋଡ଼ା ବ୍ଲକରେ ୨୦୭୦, ବଡ଼ବିଲ ପୌର ପାଳିକାରେ ୬୮୭ ଶିକ୍ଷା କେନ୍ଦ୍ର ଖୋଲା ଯାଇଅଛି, ଏଥିରୁ ଶତକଡ଼ା ୭୦ ଭାଗରୁ ଅଧିକ କେନ୍ଦ୍ର ନିୟମିତ ଭାବେ ଚାଲୁଥିବା ଦେଖାଯାଏ। ବନ୍ଦ ହୋଇ ଯାଇଥିବା କେନ୍ଦ୍ରଗୁଡ଼ିକୁ ନିୟମିତ କରାଇବା ପାଇଁ ବିଶେଷ ଉଦ୍ୟମ କରା ଯାଉଛି ଏବଂ ଏଥିପାଇଁ ନିର୍ଦ୍ଦିଷ୍ଟ ଭାବେ ପନ୍ଥା ନିର୍ଦ୍ଧାରଣ କରି ଦୃଢ଼ ପଦକ୍ଷେପ ଗ୍ରହଣ କରାଯାଉଛି। ଉପ ଜିଲ୍ଲାପାଳ ଶ୍ରୀ ଭବାନୀ ଶଙ୍କର ପଣ୍ଡାଙ୍କ ନେତୃତ୍ୱରେ ବି: ଡି: ଓ: ଶ୍ରୀ ହରି ବଲ୍ଲଭ ମିଶ୍ର, ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଶ୍ରୀ ପ୍ରଭାକର ସାହୁ, ମୁଖ୍ୟ ସ୍ୱାଧୀନ କର୍ମୀ ଶ୍ରୀ ପ୍ରଶାନ୍ତ କୁମାର ମହାପାତ୍ର, ପ୍ରକଳ୍ପ ସଂଯୋଜକ, ଉପ ପ୍ରକଳ୍ପ ସଂଯୋଜକ ପ୍ରମୁଖ ସ୍ୱେଚ୍ଛାସେବୀମାନଙ୍କ ସହିତ ଗ୍ରାମ ପଞ୍ଚାୟତ ସରପଞ୍ଚ ଓ ପଞ୍ଚାୟତ ସମିତି ସଭ୍ୟମାନଙ୍କ ସକ୍ରିୟ ସାହାଯ୍ୟ ଓ ସହଯୋଗ ବଳରେ ସମ୍ମୁଖ ଯୁଦ୍ଧରେ ଅବତୀର୍ଣ୍ଣ। ଶତ୍ରୁ ବର୍ତ୍ତମାନ ନିଶ୍ଚିତ ପରାଜୟର ଦ୍ୱାର ଦେଶରେ। ବିଜୟ ସେମାନଙ୍କ ପାଇଁ ସୁନିଶ୍ଚିତ, ଅଧିକାଂଶ ୨ୟ ଭାଗ ପାଠ ଶେଷ କରି ବର୍ତ୍ତମାନ ୩ୟ ଭାଗ ପାଠ ବହି ଅପେକ୍ଷାରେ। ଏଥି ପାଇଁ ଜିଲ୍ଲାପାଳ ଶ୍ରୀ ଅରୁଣ କୁମାର ପଣ୍ଡାଙ୍କର ନିୟମିତ ପରିଦର୍ଶନ, ଅବିଶ୍ରାନ୍ତ ପରିଶ୍ରମ ଓ ସୁଚିନ୍ତିତ ପରାମର୍ଶ ସମସ୍ତଙ୍କୁ ଏକ ନୂତନ ସ୍ୱାଦ, ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ଯୋଗାଉଛି। ସବୁଠାରୁ ଗୋଟିଏ ବଡ଼କଥା ଲକ୍ଷ୍ୟ କରାଯାଉଛି, ତାହା ହେଉଛି କୌଣସି ପ୍ରକାର କଳାଯାତ୍ରା, ମେଳା କିମ୍ବା ସମାବେଶ ବିଶେଷ କୌଣସି ପ୍ରଭାବ ପକାଇ ପାରୁନଥିବା ବେଳେ ଏବଂ ସେ ସବୁ ଅପେକ୍ଷା ଜିଲ୍ଲାପାଳଙ୍କର ଥରେମାତ୍ର ଗୋଟିଏ ଗ୍ରାମକୁ ପରିଦର୍ଶନ ସେହି ସବୁ ଗ୍ରାମଗୁଡ଼ିକ ପାଇଁ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ ଯୋଗାଉଛି ଶିକ୍ଷାକେନ୍ଦ୍ର ଖୋଲିବାରେ ଏବଂ ନିୟମିତ ଚଳାଇବାରେ, ଆଗ୍ରହର ସହିତ ଶିକ୍ଷାକେନ୍ଦ୍ରଗୁଡ଼ିକ ଖୋଲିଯାଉଛି। ପ୍ରାୟ ସମସ୍ତେ ବର୍ତ୍ତମାନ ଆଶାବାଦୀ ଏବଂ ଅପେକ୍ଷାମାନ ଅବସ୍ଥାରେ ପୂର୍ବାକାଶକୁ ଚାହିଁ ରହିଛନ୍ତି ନବ ଭାସ୍କରଙ୍କର ତେଜସ୍ୱିୟ ସୁନେଲି କିରଣର ଦର୍ଶନ ଏବଂ ସ୍ୱାଦ ଲଭିବା ନିମନ୍ତେ ଯାହାକି "ସବୁଜ ସାକ୍ଷର ଆମ କେନ୍ଦୁଝର।"

**ଶ୍ରୀ ପ୍ରଭାକର ସାହୁ,**
**ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,**
**ଚମ୍ପୁଆ।**




## ରାଜ୍ୟର ସମୂହ ବିକାଶକୁ ଆଖି ଆଗରେ ରଖି ଯୋଜନା ପ୍ରଣୟନ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆହ୍ୱାନ ଦେଇଛନ୍ତି ।

ସମ୍ପ୍ରତି ସଚିବାଳୟ ସମ୍ମିଳନୀ କକ୍ଷରେ ଆୟୋଜିତ ରାଜ୍ୟ ଯୋଜନା ବୋର୍ଡ଼ ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟମନ୍ତ୍ରୀ କହିଲେ ଯେ, ଆମ ରାଜ୍ୟରେ ବେକାରୀ ଅବସ୍ଥା ଉତ୍କଟ ହୋଇପଡ଼ିଛି । ମୋଟ ୯ ଲକ୍ଷ ବେକାର ଯୁବକ ଯୁବତୀଙ୍କ ଭିତରୁ ମାତ୍ର ଶତକଡା ସାଢ଼େ ଛ' ଭାଗ ପ୍ରତ୍ୟକ୍ଷ ନିଯୁକ୍ତି ପାଇପାରୁଛନ୍ତି । ରାଜ୍ୟରେ ଇସ୍ପାତ କାରଖାନା, ଆଲମିନିୟମ ପ୍ରକଳ୍ପ ବା ତୈଳ ବିଶୋଧନାଗାର କଥା ଯାହା ଚିନ୍ତା କରାଯାଉଛି, ତାହା ଅଭିବୃଦ୍ଧିର କେନ୍ଦ୍ର ରୂପେ କାର୍ଯ୍ୟ କରିବ । କିନ୍ତୁ ଆମକୁ ଜନସଂଖ୍ୟା ବୃଦ୍ଧି ରୋକିବା ଦିଗରେ କାର୍ଯ୍ୟ କରିବାକୁ ପଡ଼ିବ । କୃଷି କ୍ଷେତ୍ରରେ ମୋଟ ଜନସଂଖ୍ୟାର ଏକ ବିଶେଷ ଭାଗ କାର୍ଯ୍ୟ କରୁଥିବାରୁ କୃଷିର ଉନ୍ନତି ଉପରେ ପ୍ରାଥମିକତା ଦେବାକୁ ପଡ଼ିବ । ସେହିପରି କ୍ଷୁଦ୍ରଶିଳ୍ପ ସମ୍ପର୍କରେ ଚିନ୍ତା କଲାବେଳେ ଉତ୍ପାଦିତ ସାମଗ୍ରୀର ଚାହିଦା ଓ ବିକ୍ରିବଟା ବିଷୟରେ ମଧ୍ୟ ବିଚାର କରିବାକୁ ପଡ଼ିବ । ଗୃହ ନିର୍ମାଣ ଏକ ଅତ୍ୟାବଶ୍ୟକ ବ୍ୟାପାର ହୋଇଥିବାରୁ ଶସ୍ତା ଦରରେ ମିଳୁଥିବା ସ୍ଥାନୀୟ ଗୃହ ନିର୍ମାଣ ସାମଗ୍ରୀର ଉପଯୋଗ କରି ଅଳ୍ପ ମୂଲ୍ୟରେ ଘର ତିଆରି କରିବାର କୌଶଳକୁ ଲୋକପ୍ରିୟ କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଆରୋପ କରିଥିଲେ ।

ଏହି ବୈଠକରେ ମୁଖ୍ୟତଃ ଜନସଂଖ୍ୟା ନିୟନ୍ତ୍ରଣ, ପ୍ରାଥମିକ ସ୍ୱାସ୍ଥ୍ୟ ସୁବିଧା ଓ କୃଷି ଉନ୍ନୟନ ଉପରେ ଆଲୋଚନା କରାଯାଇଛି । ଯୋଜନା ବୋର୍ଡ଼ର ସଭ୍ୟ ଶ୍ରୀ ତ୍ରିଲୋଚନ କାନୁନଗୋ ଆଲୋଚନା ଆରମ୍ଭ କରି ଭାରତବର୍ଷରେ ଜନସଂଖ୍ୟା ବୃଦ୍ଧି ଉଦ୍‌ବେଗଜନକ ଅବସ୍ଥାରେ ପହଞ୍ଚିଥିବାରୁ ଏହାକୁ ରୋକିବା ପାଇଁ ଜୋରଦାର କାର୍ଯ୍ୟକ୍ରମ ଆରମ୍ଭ ହେବା ଉଚିତ ବୋଲି ମତ ବ୍ୟକ୍ତ କରିଥିଲେ । ଓଡ଼ିଶାରେ ଶିଶୁ ମୃତ୍ୟୁ ହାର ସାରା ଦେଶରେ ଅଧିକ ହୋଇଥିବାରୁ ଏହାକୁ ରୋକିବା ପାଇଁ ଗ୍ରାମ ପଞ୍ଚାୟତ ସ୍ତରରୁ ଉଦ୍ୟମ ଆରମ୍ଭ କରିବା ପାଇଁ ସେ ପରାମର୍ଶ ଦେଇଥିଲେ ।

ସମାଜର ସବୁ ସ୍ତରର ଲୋକଙ୍କ ଭିତରେ ଜନସଂଖ୍ୟା ନିୟନ୍ତ୍ରଣ ଦିଗରେ ଚେତନା ଜାଗ୍ରତ କରିବା ପାଇଁ ରାଜନୀତିଜ୍ଞ ଓ ସରକାରୀ କର୍ମଚାରୀଙ୍କ ପାଇଁ ଆଚରଣ ବିଧି ପ୍ରସ୍ତୁତ କରିବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଦେଇଥିଲେ । ଏ ସମ୍ପର୍କରେ ଅଧିକ ବିଶ୍ଳେଷଣ କରିବା ପାଇଁ ଯୋଜନା ବୋର୍ଡ଼ର ଉପାଧ୍ୟକ୍ଷ ଅର୍ଥମନ୍ତ୍ରୀ ଶ୍ରୀ ଅଗ୍ରୱାଲାଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଛି ।

ଅନ୍ୟମାନଙ୍କ ଭିତରେ ଯୋଜନା ବୋର୍ଡ଼ର ଉପାଧ୍ୟକ୍ଷ ରାଜ୍ୟ ଅର୍ଥମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲ, ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ମୁସ୍ତାଫିଜ୍ ଅହମ୍ମଦ, ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ କମଳା ଦାସ, ଯୋଜନା ବୋର୍ଡ ସଭ୍ୟ ଶ୍ରୀ ତ୍ରିଲୋଚନ କାନନଗୋ, ଅଦ୍ୱିତି ମହାପାତ୍ର, ଅଚ୍ୟୁତ ଦାସ, ରାଧାଶ୍ୟାମ ବାରିକ, ଡକ୍ଟର ବୈଦ୍ୟନାଥ ମିଶ୍ର, ଡକ୍ଟର ଜି: ଏନ୍: ମିଶ୍ର, ଡକ୍ଟର ପି: କେ: ମହାନ୍ତିଙ୍କ ସମେତ ମୁଖ୍ୟ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସ, ଉନ୍ନୟନ କମିଶନର ଶ୍ରୀ ପି:କେ: ପଟ୍ଟନାୟକ, ଶ୍ରୀ ଜେ: ଏସ୍: ବୈଦାଲ ଓ ଅନ୍ୟାନ୍ୟ ଉଚ୍ଚ ପଦସ୍ଥ ଅଫିସରମାନେ ଏହି ବୈଠକରେ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ବ୍ୟାପକ ଶସ୍ୟ ବୀମା ଯୋଜନା

ଭାରତୀୟ ସାଧାରଣ ବୀମା ନିଗମ ଏବଂ ରାଜ୍ୟ ସରକାରଙ୍କ ମିଳିତ ଉଦ୍ୟମରେ "ବ୍ୟାପକ ଶସ୍ୟ ବୀମା ଯୋଜନା" ଆମ ରାଜ୍ୟରେ ୧୯୮୫ ମସିହାରୁ କାର୍ଯ୍ୟକାରୀ ହେଉଅଛି । ପ୍ରଥମରୁ ଆମ ରାଜ୍ୟରେ ଉଭୟ ଖରିଫ ଏବଂ ରବି ଋତୁରେ ଯଥାକ୍ରମେ ବ୍ଲକ ଏବଂ ଜିଲ୍ଲାକୁ ଚିହ୍ନଟ ଅଞ୍ଚଳ (ୟୁନିଟ୍) ରୂପେ ଗ୍ରହଣ କରି କେବଳ ଧାନ ଫସଲ ପାଇଁ ଏହି ଯୋଜନା କାର୍ଯ୍ୟକାରୀ କରାଯାଉଥିଲା । ୧୯୮୭ ମସିହାରୁ ଖରିଫ ଧାନ ପାଇଁ ଗ୍ରାମ ପଞ୍ଚାୟତକୁ ଚିହ୍ନଟ ଅଞ୍ଚଳ ରୂପେ ଗ୍ରହଣ କରି ଉକ୍ତ ଯୋଜନା କାର୍ଯ୍ୟକାରୀକରିବାରେ ଓଡ଼ିଶା ଦେଶରେ ପ୍ରଥମ ରାଜ୍ୟ । ଏବେ ୧୯୯୨ ଖରିଫ ଋତୁର ଧାନ ଓ ଚିନାବାଦାମ ଫସଲ ପାଇଁ ବୀମା ଭୁକ୍ତ ୬୨,୫୭୬ ଜଣ ଚାଷୀଙ୍କୁ ୩ କୋଟି ୫୯ ଲକ୍ଷ ୪୭ ହଜାର ଟଙ୍କା କ୍ଷତି ପୂରଣ ଦିଆଯିବାର ବ୍ୟବସ୍ଥା କରାଯାଉଛି ।

ଚଳିତ ୧୯୯୩ ଖରିଫ୍ ଋତୁରେ ଧାନ ଚାଷ ପାଇଁ ରାଜ୍ୟର ସମସ୍ତ ୨୭ଟି ଜିଲ୍ଲାରେ ଉକ୍ତ ଯୋଜନା ଲାଗୁ କରାଯାଇଛି ଏବଂ ଗ୍ରାମ ପଞ୍ଚାୟତ, ପୌର ଅଞ୍ଚଳ ଏବଂ ବିଜ୍ଞାପିତ ପରିଷଦ ଅଞ୍ଚଳକୁ ଚିହ୍ନଟ ଅଞ୍ଚଳ (ୟୁନିଟ୍) ରୂପେ ଘୋଷଣା କରାଯାଉଛି ।

ଚିନାବାଦାମ ଫସଲ ନିମନ୍ତେ ଉକ୍ତ ଯୋଜନା ନିର୍ଦ୍ଦିଷ୍ଟ କେତୋଟି ଜିଲ୍ଲାରେ କାର୍ଯ୍ୟକାରୀ ହେଉଅଛି ଏବଂ ଉଭୟ ଖରିଫ ଏବଂ ରବି ଋତୁରେ ବ୍ଲକ୍‌କୁ ଚିହ୍ନଟ ଅଞ୍ଚଳ ରୂପେ ଗ୍ରହଣ କରାଯାଉଛି । ଚଳିତ ଖରିଫ ଋତୁରେ ଉକ୍ତ ଯୋଜନାରେ ବଲାଙ୍ଗୀର, ସୋନପୁର

ଢେଙ୍କାନାଳ, ଅନୁଗୁଳ, ବରଗଡ଼, ଗଞ୍ଜାମ ଓ ଗଜପତି ଜିଲ୍ଲାର ବ୍ଲକଗୁଡ଼ିକୁ ଏହି ଯୋଜନାର ଚିହ୍ନଟ ଅଞ୍ଚଳ ରୂପେ ଘୋଷଣା କରାଯାଇଛି ।

## ପୁରୀ ରଥଯାତ୍ରାରେ ଓଡ଼ିଶାର ସଂସ୍କୃତି ସମ୍ପର୍କୀୟ ପ୍ରଦର୍ଶନୀ

ବିଶ୍ୱ ପ୍ରସିଦ୍ଧ ପୁରୀ ରଥଯାତ୍ରା ଉପଲକ୍ଷେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ପକ୍ଷରୁ ପୁରୀଠାରେ ଏକ ପ୍ରଦର୍ଶନୀ ଖୋଲାଯାଇଛି । ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଗତ ଜୁନ୍ ୨୯ ତାରିଖ ସନ୍ଧ୍ୟାରେ ଉଦ୍‌ଘାଟନ କରି ଏହି ପ୍ରଦର୍ଶନୀ ବୁଲି ଦେଖିଥିଲେ । ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ରଥ ଏହି ଉଦ୍‌ଘାଟନ ଉତ୍ସବରେ ଉପସ୍ଥିତ ଥିଲେ ।

ଏହି ପ୍ରଦର୍ଶନୀରେ ପୁରୀ ସହରର ବହୁ ଦର୍ଶନୀୟ ସ୍ଥାନ ସମେତ ଓଡ଼ିଶାର ବିଭିନ୍ନ ମନ୍ଦିର ଓ ଦର୍ଶନୀୟ ସ୍ଥାନର ଫଟୋଚିତ୍ର ରଖାଯାଇଛି । ଏତଦ୍ ବ୍ୟତୀତ ଶଙ୍ଖକ୍ଷେତ୍ର, ଜୟଦେବ, କଳିଙ୍ଗ ବାଲିଯାତ୍ରା ଏବଂ ଓଡ଼ିଶାର ମହାନ ସଂସ୍କୃତି ଓ ପରମ୍ପରା ସମ୍ପର୍କରେ ଚିତ୍ର ଦିଆଯାଇଛି ।

## ନିର୍ମଳ ଚରିତ୍ର ଗଠନ ଓ ନିଃସ୍ୱାର୍ଥପର ଜନସେବା ଦ୍ୱାରା ଗୋପବନ୍ଧୁଙ୍କ ସ୍ୱପ୍ନ ସାର୍ଥକ ହୋଇପାରିବ

—ରାଜ୍ୟପାଳ ଶ୍ରୀ ରେଡ୍‌ଡୀ

ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ବି. ସତ୍ୟନାରାୟଣ ରେଡ୍‌ଡୀ ସତ୍ୟବାଦୀ ରାଜ୍ୟ ଶାଖା ଲୋକସେବକ ମଣ୍ଡଳ ଦ୍ୱାରା ଆୟୋଜିତ ସ୍ୱର୍ଗତଃ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ୬୯ତମ ଶ୍ରାଦ୍ଧ ବାର୍ଷିକୀ ପାଳନ ଅବସରରେ ନିର୍ମଳ ଚରିତ୍ର ଗଠନ ଓ ନିଃସ୍ୱାର୍ଥପର ଜନସେବା ଦ୍ୱାରାହିଁ ଗୋପବନ୍ଧୁଙ୍କ ସମୃଦ୍ଧ, ସଙ୍ଗଠିତ ଓ ସଂସ୍କୃତି ସମ୍ପନ୍ନ ଦେଶ ଗଠନ କରିବାର ଈପ୍‌ସିତ ସ୍ୱପ୍ନ ସାକାର ହୋଇପାରିବ ବୋଲି ମତ ପ୍ରକାଶ କରିଛନ୍ତି ।

ନୂତନ ଓଡ଼ିଶାର ଅନ୍ୟତମ ନିର୍ମାତା ଯୋଗଜନ୍ମା ଏହି ଅମର ଆତ୍ମା ପ୍ରତି ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ରାଜ୍ୟପାଳ ଦଳିତ, ନିଷ୍ପେଷିତ, ଦରିଦ୍ର ଜନତାର ଭାଗ୍ୟ ଓ ଅବସ୍ଥାରେ ଅନୁପ୍ରାଣିତ ହେଉ ବୋଲି ଆହ୍ୱାନ କରିଥିଲେ । ଗୋପବନ୍ଧୁ ତତ୍କାଳୀନ ସମାଜର ସାମାଜିକ, ଶିକ୍ଷା ଓ ସାମ୍ବାଦିକତା କ୍ଷେତ୍ରରେ ଏକ ଉଜ୍ଜ୍ୱଳ୍ୟମାନ ତାରକା ଥିଲେ ବୋଲି ରାଜ୍ୟପାଳ ପ୍ରକାଶ କରିଥିଲେ । ସାର୍ବଜନୀନ ପ୍ରେମ, ମୈତ୍ରୀଭାବ, ସରଳତା ଏବଂ ନିଃସ୍ୱାର୍ଥପରତାର ଏହି ମହାନ ମୂର୍ତ୍ତିମନ୍ତ ପ୍ରତୀକ । ବନ୍ୟା ହେଉ, ମରୁଡ଼ି ହେଉ, ମହାମାରୀ ହେଉ—ସମସ୍ତ ଦୁର୍ଦ୍ଦିନ ସମୟରେ ଆଶାର ଆଲୋକବର୍ତ୍ତିକା ସଦୃଶ କାର୍ଯ୍ୟରତ ରହୁଥିଲେ ବୋଲି ଶ୍ରୀ ରେଡ୍‌ଡୀ ମତବ୍ୟକ୍ତ କରିଥିଲେ । ବ୍ୟବସ୍ଥାପକ ହିସାବରେ ତାଙ୍କର ସୁଖ୍ୟାତି, ଜାତିର ପରାଧୀନତା ଓ ଅସମାନତା ବିରୁଦ୍ଧରେ ତାଙ୍କର ସ୍ୱର ଉତ୍ତୋଳନ, ଉତ୍କଳୀୟ ମନରେ ଭାରତୀୟତାର ବୀଜ ବପନ, ତାଙ୍କୁ ମହାତ୍ମା ଗାନ୍ଧୀଙ୍କ ଅତି ପ୍ରିୟଭାଜନ କରିପାରିଥିଲା ବୋଲି ରାଜ୍ୟପାଳ ପ୍ରକାଶ କରିଥିଲେ । କର୍ମବୀର ଗୋପବନ୍ଧୁଙ୍କ ତ୍ୟାଗ ଓ ସେବା ମନୋଭାବରେ ଅନୁପ୍ରାଣିତ ହେଲେ ଏ ଜାତି, ଏ ଦେଶ ଯଥାର୍ଥରେ ସମୃଦ୍ଧ, ଉନ୍ନତିର ଚରମ ସୋପାନରେ ପହଞ୍ଚି ପାରିବ ବୋଲି ଶ୍ରୀଯୁକ୍ତ ରେଡ୍‌ଡୀ ଆଶା ପ୍ରକାଶ କରିଥିଲେ । ରାଜ୍ୟପାଳ ଏହି ଅବସରରେ ପ୍ରକାଶିତ 'ସମାଜ'ର ବାର୍ଷିକୀ ସ୍ମରଣିକା ଉନ୍ମୋଚନ କରିଥିଲେ । ଗୋପବନ୍ଧୁଙ୍କ ଜୀବନୀ ଉପରେ ଡକ୍ଟର ରାଧାନାଥ ରଥଙ୍କ ଦ୍ୱାରା ଲିଖିତ ପ୍ରବନ୍ଧମାଳା ପୁସ୍ତକକୁ ମଧ୍ୟ ଶ୍ରୀ ରେଡ୍‌ଡୀ ଉନ୍ମୋଚନ କରିଥିଲେ ।

ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ତ୍ରିବିକ୍ରମ ପତି ପଣ୍ଡିତ ଗୋପବନ୍ଧୁଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ ସ୍ୱରଚିତ ସଂସ୍କୃତ କବିତା ପାଠ କରିଥିଲେ ।

ଶ୍ରୀ ଚିତରଞ୍ଜନ ଦାଶ ପଣ୍ଡିତ ଗୋପବନ୍ଧୁଙ୍କ ତ୍ୟାଗପୂତ ଜୀବନୀ ଆଜିର ଯୁବ ସମାଜପାଇଁ ନୂତନ ପଥ, ନୂତନ ଆଲୋକ ଦର୍ଶାଉ ବୋଲି କହିଥିଲେ ।

ବର୍ଷୀୟାନ ସମ୍ପାଦକ ଡକ୍ଟର ରାଧାନାଥ ରଥ ରାଜ୍ୟପାଳଙ୍କର ସଦୟ ଉପସ୍ଥିତି ଯୋଗୁଁ ତାଙ୍କୁ କୃତଜ୍ଞତା ଜ୍ଞାପନ କରିଥିଲେ ।

ଶ୍ରୀମତୀ ମନୋରମା ମହାପାତ୍ର ଶେଷରେ ଧନ୍ୟବାଦ ଦେଇଥିଲେ । ରାଜ୍ୟପାଳ ଏହି ଅବସରରେ ଗୋପବନ୍ଧୁଙ୍କ ଜୀବନୀ ଉପରେ ଆୟୋଜିତ ବକ୍ତୃତା ପ୍ରତିଯୋଗିତାରେ କୃତିତ୍ୱ ହାସଲ କରିଥିବା ୯ ଜଣ ଛାତ୍ରଛାତ୍ରୀଙ୍କୁ ପୁରସ୍କାର ପ୍ରଦାନ କରିଥିଲେ ।

## କୃଷି ଉତ୍ପାଦନ ବୃଦ୍ଧି ଦ୍ୱାରା ସ୍ୱାବଲମ୍ବନଶୀଳ ହେବା ଉପରେ ମୁଖ୍ୟମନ୍ତ୍ରୀଙ୍କ ଗୁରୁତ୍ୱ

ରାଜ୍ୟର କୃଷିଜାତ ସାମଗ୍ରୀର ଉତ୍ପାଦନ ବୃଦ୍ଧି କରାଯାଇ ଏ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବା ଉପରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଗୁରୁତ୍ୱ ଆରୋପ କରିଛନ୍ତି ।

ସମ୍ପ୍ରତି ସଚିବାଳୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ କୃଷି ବିଭାଗର ଅଣଆନୁଷ୍ଠାନିକ ପରାମର୍ଶଦାତା କମିଟିର ଏକ ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟମନ୍ତ୍ରୀ କହିଲେ ଯେ, ରାଜଧାନୀ ଭୁବନେଶ୍ୱର ବଜାରର ଚାହିଦା ମେଣ୍ଟାଇବା ପାଇଁ ମଧ୍ୟ ଆମେ ଆନ୍ଧ୍ରରୁ କଦଳୀ, ଅଣ୍ଡା ଓ ମାଛ ପ୍ରଭୃତି ଆମଦାନୀ କରୁଛୁ । ଆମକୁ ଏ ଦିଗରେ ସ୍ୱାବଲମ୍ବୀ ହେବାକୁ ଯତ୍ନ କରିବାକୁ ପଡ଼ିବ । କୃଷି ବିଭାଗ, ଉଦ୍ୟାନ କୃଷି, ମୃତ୍ତିକା ସଂରକ୍ଷଣ, ସମବାୟ, ମତ୍ସ୍ୟ, ପଶୁପାଳନ ବିଭାଗ ସହିତ ସମନ୍ୱୟ ରକ୍ଷାକରି କାର୍ଯ୍ୟ କଲେ ଏ ବାବଦରେ ସଫଳତା ମିଳି ପାରିବ ବୋଲି ସେ ସୂଚନା ଦେଇଥିଲେ । ମୁଖ୍ୟମନ୍ତ୍ରୀ କହିଲେ ଯେ, କୃଷିର ବିକାଶ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇଥିବାରୁ ସେ ନିଜେ ଏ ସମ୍ପର୍କରେ ସମୀକ୍ଷା କରିବେ ।

ଆଲୋଚନା ଆରମ୍ଭକରି ବିଧାୟକ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ରାଜ୍ୟରେ ନୂତନ ଧରଣର ଅର୍ଥକରୀ ଚାଷର ପ୍ରବର୍ତ୍ତନ ପାଇଁ ସୁଯୋଗ ରହିଥିବାରୁ ଚା, କଫି, ମସଲା ଓ ଫଳଚାଷ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ରାଜ୍ୟରେ କୃଷି ଓ କୃଷିଜାତ ଦ୍ରବ୍ୟ ଭିତ୍ତିକ ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରିବା ନେଇ ଚିନ୍ତା କରିବାକୁ ସେ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରିଥିଲେ ।

ଏହି ବୈଠକରେ ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର, ବିଧାୟକ ସର୍ବଶ୍ରୀ ବସନ୍ତ କୁମାର ବିଶ୍ୱାଳ, ରଘୁନାଥ ପଟ୍ଟନାୟକ, ବିନାୟକ ମହାପାତ୍ର, ରାଧାକାନ୍ତ ସେଠୀ ଓ ସୁରେନ୍ଦ୍ରନାଥ ପାଟଯୋଷୀଙ୍କ ସମେତ କୃଷି ଉତ୍ପାଦନ କମିଶନର ଓ ବିଭାଗୀୟ ପ୍ରମୁଖ ଶାସନ ସଚିବ ଶ୍ରୀ ଚନ୍ଦ୍ରମଣି ନାରାୟଣସ୍ୱାମୀ, କୃଷି, ଉଦ୍ୟାନକୃଷି ଓ ମୃତ୍ତିକା ସଂରକ୍ଷଣ ବିଭାଗମାନଙ୍କର ନିର୍ଦ୍ଦେଶକବୃନ୍ଦ, ସମବାୟ ସମିତିସମୂହର ନିବନ୍ଧକ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ ଅଫିସରମାନେ ଉପସ୍ଥିତ ରହି ଆଲୋଚନାରେ ଭାଗ ନେଇଥିଲେ ।

## ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ମୁଖ୍ୟ ଓ ରାଜଭବନ କର୍ମଚାରୀମାନଙ୍କ ଦ୍ୱାରା ରାଜ୍ୟପାଳଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ

ଓଡ଼ିଶାର ନୂତନ ରାଜ୍ୟପାଳ ଭାବେ ଶପଥ ଗ୍ରହଣ କରିବା ପରେ ପରେ ଶ୍ରୀଯୁକ୍ତ ବି.ସତ୍ୟନାରାୟଣ ରେଡ୍ଡୀ ରାଜ୍ୟପାଳଙ୍କ ଅଧ୍ୟକ୍ଷତାରେ ପରିଚାଳିତ ହେଉଥିବା ସର୍ବଭାରତୀୟ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ରାଜ୍ୟଶାଖାର ମୁଖ୍ୟମାନଙ୍କୁ ସାକ୍ଷାତଦେଇ, ଜନହିତକର କାର୍ଯ୍ୟକ୍ରମଗୁଡ଼ିକର ପରିଚାଳନା କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ସୃଷ୍ଟି ନହୁଏ ସେଥିପ୍ରତି ସଦା ସତର୍କ ରହିବାକୁ ପରାମର୍ଶ ଦେଇଛନ୍ତି ।

ରେଡ୍‌କ୍ରସ୍ ରାଜ୍ୟଶାଖା, ରାଜ୍ୟ ଶିଶୁ ବିକାଶ ପରିଷଦ, ରାଜ୍ୟ ସଂସ୍କୃତି ପରିଷଦ, ସେଣ୍ଟ ଜନ୍ ଆମ୍ବୁଲାନସ୍, ହିନ୍ଦ କୁଷ୍ଠ ନିବାରଣ ସଂଘ, ଓଡ଼ିଶା ଯକ୍ଷ୍ମା ଆସୋସିଏସନ୍ ଓ ରାଜ୍ୟ ସୈନିକ ବୋର୍ଡ଼ର ମୁଖ୍ୟମାନଙ୍କୁ ରାଜ୍ୟପାଳ ଶ୍ରୀ ରେଡ୍ଡୀ ଏକ ବୈଠକରେ ଉଦ୍‌ବୋଧନ ଦେଇ, ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ କେବଳ କାଗଜ ପତ୍ରରେ ସ୍ଥିତି ବଜାୟ ରଖିବାରେ ଯେ ବିଶ୍ୱାସ କରନ୍ତି ନାହିଁ ବୋଲି ମତପ୍ରକାଶ କରିଥିଲେ । ଏହିଭଳି ଜନହିତୈଷୀ ଅନୁଷ୍ଠାନଗୁଡ଼ିକର ଭିତ୍ତିଭୂମି ସୁଦୃଢ଼ କରି ଥିବାରୁ କାର୍ଯ୍ୟକ୍ରମର ପରିସର ପରିବ୍ୟାପ୍ତ ହେବାର ଯଥେଷ୍ଟ ସୁଯୋଗ ରହିଛି ବୋଲି ସଙ୍କେତ ଦେଇ ଶ୍ରୀ ରେଡ୍ଡୀ କହିଥିଲେ ଯେ, ଏହିଭଳି କାର୍ଯ୍ୟକ୍ରମଗୁଡ଼ିକରେ ସେ ନିଜକୁ ନିବିଡ଼ ଭାବେ ସଂଯୁକ୍ତ କରିବାକୁ ବିଶେଷ ଆଗ୍ରହୀ । ଆମ ରାଜ୍ୟରେ ଏହି ଅନୁଷ୍ଠାନଗୁଡ଼ିକୁ ଭଲ କାମ କରିଥିବାର ଜାଣି ସେ ବିଶେଷ ଆନନ୍ଦିତ ବୋଲି ପ୍ରକାଶ କରି କାର୍ଯ୍ୟକ୍ରମଗୁଡ଼ିକୁ ଆହୁରି କ୍ଷିପ୍ରତର କରିବାକୁ ପରାମର୍ଶ ଦେଇଥିଲେ ।

ରାଜ୍ୟପାଳଙ୍କ ଶାସନ ସଚିବ ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ ବିଭିନ୍ନ ଅନୁଷ୍ଠାନର କର୍ମଚାରୀମାନଙ୍କ ପରିଚୟ କରାଇ ଦେଇଥିଲେ ।

ଏହା ପୂର୍ବରୁ ରାଜ୍ୟପାଳ ଶ୍ରୀ ରେଡ୍ଡୀ ରାଜଭବନର ସମସ୍ତ ପଦାଧିକାରୀ ଓ କର୍ମଚାରୀମାନଙ୍କ ଦ୍ୱାରା ସମ୍ବର୍ଦ୍ଧନାର ଉତ୍ତର ଦେଇ ରାଜଭବନ କର୍ମଚାରୀମାନଙ୍କ ମଧ୍ୟରେ ସମୟାନୁବର୍ତ୍ତିତା ଓ ଶୃଙ୍ଖଳା ପ୍ରକାଶ ପାଇବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ରାଜଭବନର ମହାନ୍ ପରମ୍ପରା, ନିରପେକ୍ଷତା ଓ ପବିତ୍ରତା ରକ୍ଷା କରିବାରେ ରାଜଭବନର ସହକର୍ମୀମାନେ ତାଙ୍କୁ ବିଶେଷ ସହଯୋଗ ଯୋଗାଇ ଦେବେବୋଲି ମଧ୍ୟ ଆଶା ପୋଷଣ କରିଥିଲେ । ରାଜ୍ୟପାଳଙ୍କ ସଚିବ ଶ୍ରୀ ପାଢ଼ୀ ରାଜଭବନ ପରିସରରେ ଗଢ଼ିଉଠିଥିବା ସାଂସ୍କୃତିକ, ସାମାଜିକ ଓ ଶିକ୍ଷା ବାତାବରଣ ସମ୍ପର୍କରେ ରାଜ୍ୟପାଳଙ୍କୁ ସୂଚନା ଦେଇଥିଲେ ।

## ସାଲେପୁରଠାରେ ସୂଚନା କେନ୍ଦ୍ର ଓ ପାଠାଗାର ଉଦ୍‌ଘାଟନ

ଏକ ଗଣତାନ୍ତ୍ରିକ ରାଜ୍ୟରେ ଲୋକମାନଙ୍କ ମଧ୍ୟରେ ଦେଶ ବିଦେଶର ସମ୍ବାଦ ପରିବେଷଣ ଲାଗି ସୂଚନା କେନ୍ଦ୍ରଗୁଡ଼ିକର ବିଶେଷ ଆବଶ୍ୟକତା ରହିଛି ବୋଲି ଉଠା ଜଳସେଚନ ମନ୍ତ୍ରୀ ଶ୍ରୀ ସହରାଇ ଓରାମ ପ୍ରକାଶ କରିଛନ୍ତି । ଗତ ୬ ତାରିଖ ଦିନ ସାଲେପୁରଠାରେ ଏକ ସୂଚନା କେନ୍ଦ୍ର ଓ ପାଠାଗାର ଉଦ୍‌ଘାଟନ କରି ଉଠା ଜଳସେଚନ ମନ୍ତ୍ରୀ ରାଜ୍ୟର ସମସ୍ତ ଅଞ୍ଚଳରେ ଏଭଳି କେନ୍ଦ୍ର ପ୍ରତିଷ୍ଠିତ ହେଲେ ଲୋକମାନଙ୍କ ପାଖରେ ସହଜରେ ସମ୍ବାଦ ପରିବେଷଣ କରିବା ସଙ୍ଗେ ସଙ୍ଗେ ସରକାରଙ୍କର ବିଭିନ୍ନ କାର୍ଯ୍ୟକ୍ରମ ଉପରେ ସେମାନଙ୍କୁ ସୂଚନା ଦେବା ସମ୍ଭବପର ହୋଇପାରିବ ବୋଲି ମତ ଦେଇଥିଲେ ।

ଏହି ଉତ୍ସବରେ ସ୍ଥାନୀୟ ବିଧାନସଭା ସଦସ୍ୟ ତଥା ଶକ୍ତିମନ୍ତ୍ରୀ ଶ୍ରୀ କାଳିନ୍ଦୀ ଚରଣ ବେହେରା ପୌରହିତ୍ୟ କରିଥିଲେ । ପୂର୍ବତନ ମନ୍ତ୍ରୀ ଶ୍ରୀ ଶରତ କୁମାର କର ସମ୍ମାନୀୟ ଅତିଥିଭାବେ ଯୋଗ ଦେଇଥିଲେ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ପ୍ରାଣକୃଷ୍ଣ ବେହେରା ସ୍ୱାଗତ ଭାଷଣ ଦେଇ କହିଲେ ଯେ ରାଜ୍ୟର ସମସ୍ତ ସବ୍‌ଡିଭିଜନ ସ୍ତରରେ ଏହିପରି ସୂଚନା କେନ୍ଦ୍ର ଓ ପାଠାଗାର ଖୋଲାଯାଇଛି । ବର୍ତ୍ତମାନ ସରକାର ଗ୍ରାମାଞ୍ଚଳରେ ଏହାର ବିସ୍ତାର ଲାଗି ନୀତିଗତ ଭାବେ ସ୍ଥିର କରିଛନ୍ତି । ବିଭିନ୍ନ ପ୍ରକାର ଓଡ଼ିଆ ଓ ଇଂରାଜୀ ଭାଷାର ଖବର କାଗଜ ଏବଂ ସାପ୍ତାହିକ ଓ ମାସିକ ପତ୍ର ପତ୍ରିକା ଯୋଗାଇବା ସଙ୍ଗେ ସଙ୍ଗେ ଟି.ଭି.ଓ ରେଡ଼ିଓ ମାଧ୍ୟମରେ ସମ୍ବାଦ ପ୍ରସାର ଲାଗି ଏଠାରେ ବ୍ୟବସ୍ଥା କରାଯାଇଛି ଏବଂ ପାଠାଗାରରେ ପୁସ୍ତକ ପଢ଼ିବା ଲାଗି ସୁବିଧା କରାଯାଇଛି ବୋଲି ଶ୍ରୀ ବେହେରା କହିଥିଲେ ।

ପୂର୍ବତନ ମନ୍ତ୍ରୀ ତଥା ମାହାଙ୍ଗା ନିର୍ବାଚନ ମଣ୍ଡଳୀର ବିଧାୟକ ଶ୍ରୀ ଶରତ କୁମାର କର ସରକାରଙ୍କର ଏହି ଯୋଜନାକୁ ପ୍ରଶଂସା କରିଥିଲେ । ଏହି ସଭାରେ ସାଲେପୁର ପଞ୍ଚାୟତ ସମିତି ଚେୟାରମ୍ୟାନ ଶ୍ରୀ ଅଭେଦାନନ୍ଦ ଶତପଥୀ ଏହି ସୂଚନା କେନ୍ଦ୍ର ଓ ପାଠାଗାରରେ ବିଭିନ୍ନ ସୁବିଧା ସୁଯୋଗ ଯୋଗାଇ ଦେବାକୁ ସରକାରଙ୍କୁ ଅନୁରୋଧ କରିଥିଲେ ।

ଶକ୍ତି ମନ୍ତ୍ରୀ ଶ୍ରୀ କାଳିନ୍ଦୀ ଚରଣ ବେହେରା ସାଲେପୁରଠାରେ ସରକାରଙ୍କର ଏହି ସୂଚନା କେନ୍ଦ୍ର ଉଦ୍‌ଘାଟନକୁ ସ୍ୱାଗତ କରି ସଙ୍ଗେ ସଙ୍ଗେ ସୂଚନା କେନ୍ଦ୍ର ଓ ପାଠାଗାର ପାଇଁ ଏକ ସ୍ଥାୟୀ ଗୃହ ନିର୍ମାଣ କରିବା ପାଇଁ ସରକାର ଯୋଜନାରେ ବ୍ୟୟ ବରାଦ କରିବାକୁ ପରାମର୍ଶ ଦେଇଥିଲେ । ଏହାର ସ୍ଥାନ ନିରୂପଣ ଲାଗି

ସେ ତହସିଲଦାରଙ୍କୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ସରକାରଙ୍କ ପାଖରୁ ସେଥିପାଇଁ ବିଧିବଦ୍ଧ ପ୍ରସ୍ତାବ ଆସିବା ଉଚିତ ବୋଲି କହିଥିଲେ। ସାଲେପୁରଠାରେ ସୂଚନା କେନ୍ଦ୍ର ଓ ପାଠାଗାରର ବହୁଦିନର ଅଭାବ ପୂରଣ ହୋଇଥିବାରୁ ସେ ବିଶେଷ ଆନନ୍ଦିତ ବୋଲି ପ୍ରକାଶ କରିଥିଲେ। ସହକାରୀ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଶ୍ରୀ ସିଂହ ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ।

## ଆସିକା ଅଞ୍ଚଳର ଉନ୍ନତି ନିମନ୍ତେ ସୂଚନା ମନ୍ତ୍ରୀ ଶ୍ରୀ ଜେନାଙ୍କ ସହଯୋଗ କାମନା

ରାଜ୍ୟ ସଚିବାଳୟଠାରେ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ସହ ଆସିକା ନିର୍ବାଚନ ମଣ୍ଡଳୀର ଜନତା ସଭାପତି ଶ୍ରୀ ସରୋଜ କୁମାର ପାଢ଼ୀ ଓ କେତେକ କର୍ମୀ ସାକ୍ଷାତ କରିଥିଲେ। ଆଲୋଚନା ବେଳେ ସେମାନେ ପ୍ରକାଶ କରିଥିଲେ ଯେ ଋଷିକୁଲ୍ୟା ସେତୁର ନିର୍ମାଣ କାର୍ଯ୍ୟ ଯଥାଶିଘ୍ର ଆରମ୍ଭ କରିବା ଓ ଆସିକାକୁ ଏକ ନୂତନ ସବ୍‌ଡିଭିଜନ୍ ରୂପେ ଘୋଷଣା କରିବା ପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ୍, ସେଚମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ଏବଂ ପୂର୍ତ୍ତ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କୁ ଗତ ତା୩–୬–୧୯୯୩ରିଖରେ ସାକ୍ଷାତ କରି ଅନୁରୋଧ ଜଣାଇଛନ୍ତି।

ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ସହାୟତା ପାଇଁ ମନ୍ତ୍ରୀ ଶ୍ରୀ ଜେନାଙ୍କୁ ଶ୍ରୀ ପାଢ଼ୀ ଅନୁରୋଧ କରିଛନ୍ତି। ଉତ୍ତରରେ ମନ୍ତ୍ରୀ ଶ୍ରୀ ଜେନା ପ୍ରକାଶ କରିଥିଲେ ଯେ ସରକାରଙ୍କ କୌଣସି କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାରେ ତାଙ୍କରି ସହଯୋଗ ମିଳିବାରେ କୌଣସି ପ୍ରତିବନ୍ଧକ ରହିବ ନାହିଁ।




ସୂଚନା ଭବନଠାରେ ଅନୁଷ୍ଠିତ ବ୍ଲକ୍ ଉନ୍ନୟନ ଅଧିକାରୀ ଓ ପ୍ରକଳ୍ପ ଅଧିକାରୀମାନଙ୍କ ରାଜ୍ୟସ୍ତରୀୟ ସମ୍ମିଳନୀକୁ ପଞ୍ଚାୟତି ରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଉଦ୍‌ଘାଟନ କରୁଛନ୍ତି।

# ସାର୍ବଜନୀନ ଶିକ୍ଷା ଓ ସାକ୍ଷରତା

* ଶ୍ରୀ ରବୀନ୍ଦ୍ର କୁମାର ଜେନା

ଇଂରେଜ ଶାସନ କାଳରେ ଦେଶରେ ଆଞ୍ଚଳିକ ଭିତ୍ତିରେ ଶିକ୍ଷାର ପ୍ରସାର ଘଟିଥିଲା । କାରଣ ଇଂରେଜମାନେ ପ୍ରଥମେ କଲିକତା, ମାନ୍ଦ୍ରାଜ ଭଳି ବନ୍ଦରମାନଙ୍କରେ ବାଣିଜ୍ୟ କାରବାର ଆରମ୍ଭ କରିଥିଲେ । ଇଂରେଜମାନଙ୍କ ପ୍ରଭାବରେ ସେହି ସବୁ ସ୍ଥାନମାନଙ୍କରେ ଶିକ୍ଷାର ବିଶେଷ ପ୍ରଭାବ ପଡ଼ିଥିଲା ଓ ପ୍ରସାର ମଧ୍ୟ ଘଟିଥିଲା । ୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲା । ସେତେବେଳକୁ ଭାରତର ସାକ୍ଷରତା ହାର ମାତ୍ର ଶତକଡ଼ା ୧୫ ଭାଗ ଥିଲା । ତନ୍ମଧ୍ୟରୁ ମହିଳାମାନଙ୍କ ସାକ୍ଷରତା ହାର ମାତ୍ର ୮ ପ୍ରତିଶତ ଥିଲା । ଦେଶରେ ବେଶୀ ସଂଖ୍ୟକ ନିରକ୍ଷର ରହି ଅଳ୍ପ ସଂଖ୍ୟକ ଶିକ୍ଷିତ ବ୍ୟକ୍ତି ଥିବାରୁ ଏହାର ଏକ କୁ-ପ୍ରଭାବ ଦେଶର ଅର୍ଥନୀତିରେ ପଡ଼ିଲା । ଫଳରେ ଧନୀ ଓ ଗରିବ ଦୁଇଟି ଶ୍ରେଣୀ ସମାଜରେ ମୁଣ୍ଡ ଟେକି ଉଠିଲେ । ସେଥି ସହିତ ମହିଳାମାନଙ୍କର ଶିକ୍ଷା ପୁରୁଷମାନଙ୍କ ସହ ସମାନୁପାତରେ ଗତି କରୁନଥିବାରୁ ସାମାଜିକ କ୍ଷେତ୍ରରେ ମଧ୍ୟ ବହୁ ଅସମାନତା ଦେଖା ଦେଇଥିଲା ।

ଦେଶ ସ୍ୱାଧୀନ ହେବାର ସ୍ତରି ଦଶନ୍ଧି ଆମେ ଅତିକ୍ରମ କରି ସାରିଲେଣି । ଇତି ମଧ୍ୟରେ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟ ବହୁଳ ଭାବରେ ପ୍ରତିଷ୍ଠା ହୋଇଛି । ସାକ୍ଷର ସଂଖ୍ୟା ମଧ୍ୟ ବୃଦ୍ଧି ପାଉଛି । ୧୯୫୧ ମସିହା ଜନଗଣନା ଅନୁସାରେ ପ୍ରାଥମିକ ସ୍ତରରେ ୬ ବର୍ଷରୁ ୧୧ ବର୍ଷ ବୟସର ବାଳକ ବାଳିକା ଶତକଡ଼ା ୩୬.୮ ଭାଗ ନାମ ଲେଖାଇଥିଲେ ଓ ୧୧ ବର୍ଷରୁ ୧୪ ବର୍ଷର ଛାତ୍ରଛାତ୍ରୀଙ୍କ ସଂଖ୍ୟା ଶତକଡ଼ା ୧୩ ଭାଗ ଥିଲା । ଅଥଚ ଗତ ସ୍ତରି ଦଶନ୍ଧି ମଧ୍ୟରେ ଅର୍ଥାତ୍ ୧୯୮୯-୯୦ ମସିହା ସୁଦ୍ଧା ଏହି ୬-୧୧ ବର୍ଷ ଛାତ୍ରଛାତ୍ରୀ ନାମ ଲେଖା ହାର ୮୮-୮୯ ଭାଗ ଥିବାବେଳେ ୧୧-୧୪ ବର୍ଷ ଛାତ୍ରଛାତ୍ରୀଙ୍କ ନାମ ଲେଖା ହାର ଥିଲା ଶତକଡ଼ା ୬୦ ଭାଗ । ଏଣୁ ସାର୍ବଜନୀନ ପ୍ରାଥମିକ ଶିକ୍ଷା ନିମନ୍ତେ ଉଦ୍ଦିଷ୍ଟ ଲକ୍ଷ୍ୟ ହାସଲ ପାଇଁ ଉଦ୍ୟମ ବ୍ୟର୍ଥ ହୋଇନାହିଁ ।

ଆମେ ମଧ୍ୟ କହିପାରିବା ନାହିଁ ଯେ ସାର୍ବଜନୀନ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଆମେ ସଫଳତା ହାସଲ କରିଛୁ । କାରଣ ଦେଶରେ ଏବେ ମଧ୍ୟ ନିରକ୍ଷର ଲୋକଙ୍କ ସଂଖ୍ୟା ଅନ୍ୟୁନ ୪୮ ପ୍ରତିଶତ ରହିଛି । ଅବଶ୍ୟ ଦେଶର ଲୋକସଂଖ୍ୟା ଏପରି ଦ୍ରୁତ ଗତିରେ ବୃଦ୍ଧି ପାଉଛି ଯେ ଯାହାର କୁ-ପ୍ରଭାବ ଶିକ୍ଷା ଉପରେ ପଡୁଛି ଓ ଆନୁପାତିକ ହାରରେ ମଧ୍ୟ ନିରକ୍ଷର ସଂଖ୍ୟା ବଢ଼ିଛି । ପ୍ରାଥମିକ ସ୍ତରରେ ଅଧିକ ସଂଖ୍ୟକ ଛାତ୍ରଛାତ୍ରୀ ବିଭିନ୍ନ କାରଣରୁ ପାଠ ତ୍ୟାଗୀ ହୋଇଥାନ୍ତି ଓ ଖୁବ୍ କମ୍ ସଂଖ୍ୟକ ଛାତ୍ରଛାତ୍ରୀ ଶିକ୍ଷା ପ୍ରାପ୍ତି ନିମିତ୍ତ ଅନୁଷ୍ଠାନରେ ନିୟମିତ ଅଧ୍ୟୟନ କରିଥାନ୍ତି । ୧୯୮୬ର ଏକ ସର୍ବେକ୍ଷଣରୁ ଜଣାଯାଇଛି ଯେ ପ୍ରଥମରୁ ଚତୁର୍ଥ ଶ୍ରେଣୀ ମଧ୍ୟରେ ଶତକଡ଼ା ୪୬.୯୭ ଭାଗ ପାଠ ତ୍ୟାଗୀ ହେଉଥିବା ବେଳେ ପ୍ରଥମରୁ ସପ୍ତମ ଶ୍ରେଣୀ ମଧ୍ୟରେ ଶତକଡ଼ା ୬୨.୨୯ ଭାଗ ପାଠ ତ୍ୟାଗୀ ହେଉଛନ୍ତି ।

ବିଦ୍ୟାଳୟମାନଙ୍କରୁ ପାଠ ତ୍ୟାଗୀ ହେବାର କେତେକ ମୁଖ୍ୟ କାରଣ ମଧ୍ୟରେ ନିମ୍ନ ମାନର ଶିକ୍ଷା ଦାନ ରହିଛି । ସେଥି ସହିତ ଛାତ୍ରଛାତ୍ରୀମାନଙ୍କର ଆବଶ୍ୟକୀୟ ପଠନ ସାମଗ୍ରୀର ଅଭାବ । ସେମାନଙ୍କର ଆର୍ଥିକ ଅଭାବ ହେତୁ ପାଠ୍ୟୋପକରଣ କ୍ରୟ କରିବାର ସାମର୍ଥ୍ୟ ମଧ୍ୟ ଅନ୍ୟ ଏକ କାରଣ । ବିଦ୍ୟାଳୟମାନଙ୍କରେ ଅଣତାଲିମପ୍ରାପ୍ତ ଶିକ୍ଷକ ନିଯୁକ୍ତି ଓ ଶିକ୍ଷକମାନଙ୍କର ଛାତ୍ରଛାତ୍ରୀଙ୍କ ପାଠ ପଢ଼ା ପ୍ରତି ଆଗ୍ରହ ସୃଷ୍ଟି କରିବା ଦିଗରେ ଉପଯୁକ୍ତ ପ୍ରେରଣା ଯୋଗାଇବାରେ ଦକ୍ଷତାର ଅଭାବ ମଧ୍ୟ ରହିଛି । ଛାତ୍ରଛାତ୍ରୀମାନେ କିପରି ଏହି ଶିକ୍ଷା ପ୍ରତି ଆକୃଷ୍ଟ ହେବେ ? ଏହି କୌଶଳ ସମ୍ପର୍କରେ ସମସ୍ତ ଶିକ୍ଷକମାନେ ଅବଗତ ହେବା ଆବଶ୍ୟକ । ଏ ସବୁ କାରଣ ସତ୍ତ୍ୱେ କେତେକ କ୍ଷେତ୍ରରେ ପ୍ରାଥମିକ ବିଦ୍ୟାଳୟର ଅଭାବ ଓ ସବୁ ଛାତ୍ରଛାତ୍ରୀଙ୍କ ନିମିତ୍ତ ପ୍ରାଥମିକ ବିଦ୍ୟାଳୟରେ ସ୍ଥାନାଭାବ ମଧ୍ୟ ଏକ କାରଣ ରୂପେ ଦେଖାଦେଇଛି । କେତେକ ଆଦିବାସୀ ଅଞ୍ଚଳରେ ବସ୍ତିରେ ପ୍ରାଥମିକ ବିଦ୍ୟାଳୟର ଅଭାବ ହେତୁ ଉକ୍ତ ଅଞ୍ଚଳର ପିଲାମାନେ ଦୂର ସ୍ଥାନକୁ ଯାଇ ଶିକ୍ଷା ପାଇବାକୁ ଆଗ୍ରହୀ ନୁହନ୍ତି ।

କେତେକ କ୍ଷେତ୍ରରେ ଛୋଟ ଛୋଟ ବାଳକ ବାଳିକାମାନେ ଆର୍ଥିକ ଅଭାବ ଅନଟନ ମଧ୍ୟରେ ରହି ପର ଘରେ ମୂଲ ଲାଗି ପେଟ ପୋଷି ଥାଆନ୍ତି । ଏ ସଂକ୍ରାନ୍ତରେ ବରୋଦାସ୍ଥିତ ଏକ ଗବେଷଣା ପ୍ରତିଷ୍ଠାନ ତରଫରୁ ଅନୁଧ୍ୟାନ କରାଯାଇ ଏକ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ୧୫ ବର୍ଷରୁ କମ୍ ବୟସର ପିଲାମାନେ ନିଜ ପରିବାରକୁ ସାହାଯ୍ୟ କରିବା ନିମିତ୍ତ ଶ୍ରମିକ ଭାବେ ବିଭିନ୍ନ ସ୍ଥାନରେ କାମ କରିଥାନ୍ତି । ୧୯୮୨ ମସିହାରେ ଏକ ଗଣନାରୁ ଜଣାଯାଇଛି ଯେ ବାଳ ଶ୍ରମିକମାନଙ୍କ ସଂଖ୍ୟା ଅନ୍ୟୁନ ୪.୪ କୋଟି ହେବ । ଏଭଳି ବାଳକ ବାଳିକା ଅବା ବାଳ ଶ୍ରମିକମାନେ ବଞ୍ଚିତ

କାଳେ ପ୍ରଚଳିତ ଆନୁଷ୍ଠାନିକ ଶିକ୍ଷାନୁଷ୍ଠାନରେ ପଢ଼ିବାର ସୁଯୋଗ ପାଇପାରିବେ ନାହିଁ ଅଥବା ତହିଁରୁ ଲାଭବାନ ହୋଇପାରିବେ ନାହିଁ । ସେଥିପାଇଁ ଅଣ ଆନୁଷ୍ଠାନିକ ଶିକ୍ଷା ଜରିଆରେ ସେମାନଙ୍କୁ ଶିକ୍ଷା ଲାଭ କରିବାର ସୁଯୋଗ ଦିଆଯାଇଛି ।

ଏ ସବୁ ପ୍ରତିବନ୍ଧକ ସତ୍ତ୍ୱେ ଆମକୁ ଆମର ଲକ୍ଷ୍ୟ ହାସଲ କରିବାକୁ ପଡ଼ିବ । ସାର୍ବଜନୀନ ପ୍ରାଥମିକ ଶିକ୍ଷା ଜରିଆରେ ସମସ୍ତ ନାଗରିକ ସାକ୍ଷର ହେବେ । ତହିଁରେ ତ୍ରୁଟି ବିଚ୍ୟୁତି ଘଟିଲେ ନୂତନ ଶିକ୍ଷା ପଦ୍ଧତି ଅନୁସରଣ କରି ଜଣେ ନାଗରିକ ସର୍ବନିମ୍ନ ଶିକ୍ଷା ହାସଲ କରିବ । ସେଥିପାଇଁ ସେ ଅତି କମ୍‌ରେ ଲେଖି ପାରିବ, ସ୍ପଷ୍ଟ ପଢ଼ି ପାରିବ ଓ ସାଧାରଣ ହିସାବ ରଖିପାରିବ । ଏହା କରିପାରିଲେ ତା'ର ଶିକ୍ଷା ପ୍ରାପ୍ତି ହେଲା ବୋଲି ଧରିନେବାକୁ ହେବ ।

ବର୍ତ୍ତମାନ ଦେଶରେ ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ଚାଲୁ ରହିଛି । ଏହାର ପ୍ରାଥମିକ ଅବସ୍ଥାରେ ଲୋକଙ୍କ ମନରେ ଶିକ୍ଷାର ଆବଶ୍ୟକତା ସାମୁହିକ ବାତାବରଣ ସୃଷ୍ଟି କରିବାକୁ ପଡୁଛି । ଫଳରେ ପିତା ମାତା ଓ ଅଭିଭାବକମାନେ ଉତ୍ସାହିତ ହୋଇ ନିଜର ପିଲାମାନଙ୍କୁ ଶିକ୍ଷାନୁଷ୍ଠାନରେ ଭର୍ତ୍ତି କରିବାକୁ ଆଗେଇ ଆସୁଥିବା ଲକ୍ଷ୍ୟ କରାଯାଇଛି । ଏଥିପାଇଁ ୬ରୁ ୧୪ ବର୍ଷ ବୟସର ପିଲାମାନେ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ ସେମାନଙ୍କ ନିମିତ୍ତ ଆବଶ୍ୟକ ସଂଖ୍ୟକ ପ୍ରାଥମିକ ବିଦ୍ୟାଳୟରେ ସ୍ଥାନ ବୃଦ୍ଧି ଆବଶ୍ୟକ । କେତେକ କ୍ଷେତ୍ରରେ ବିଦ୍ୟାଳୟ ପ୍ରତିଷ୍ଠାର ଆବଶ୍ୟକତା ଉପଲବ୍ଧି ହେଉଛି ।

ପ୍ରାଥମିକ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କୁ ଅଧିକ ସଂଖ୍ୟାରେ ଗ୍ରହଣ କରିବାକୁ ହେଲେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକମାନଙ୍କର ଗୁରୁଦାୟିତ୍ୱ ରହିଛି । ସେମାନେ ପିଲାମାନଙ୍କୁ ବିଦ୍ୟାଳୟରେ ଆଣିବା ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବେ । ଶିକ୍ଷାର୍ଥୀମାନଙ୍କୁ ଶିକ୍ଷା ପ୍ରତି ଆକୃଷ୍ଟ କରାଇବେ । ଗୋଷ୍ଠୀଗତ ଆଲୋଚନା ମାଧ୍ୟମରେ ସାଧାରଣ ଲୋକ, ଅଭିଭାବକମାନଙ୍କୁ ନେଇ ଆଲୋଚନା କଲେ ସେମାନଙ୍କର ଶିକ୍ଷା ସମ୍ପର୍କୀୟ ସଚେତନତା ସୃଷ୍ଟି ହେବ ଓ ସେମାନେ ନିଜର ପିଲାମାନଙ୍କୁ ଶିକ୍ଷାନୁଷ୍ଠାନକୁ ପଠାଇବାକୁ ଆଗ୍ରହୀ ହେବେ ।

୧୯୯୧ ଜନଗଣନାରୁ ଜଣାଯାଇଛି ଯେ ଦେଶର ଅର୍ଦ୍ଧାଧିକ ଲୋକ ସାକ୍ଷର ଅର୍ଥାତ୍ ଶତକଡ଼ା ୫୨-୧୧ ଭାଗ ଲୋକ ସାକ୍ଷର । ଦଶନ୍ଧି ମଧ୍ୟରେ ଏହି ସାକ୍ଷରତା ହାର ୮-୫୫ ଭାଗ ବୃଦ୍ଧି ପାଇଛି । ସେମାନଙ୍କ ମଧ୍ୟରୁ ମହିଳା ସାକ୍ଷର ହାର ଶତକଡ଼ା ୯-୮୭ ଭାଗ ଥିବା ସମୟରେ ପୁରୁଷ ସାକ୍ଷରତା ହାର ମାତ୍ର ୭-୪୮ ବୃଦ୍ଧି ପାଇଛି । ୧୯୮୧ ମସିହାରେ ଦେଶରେ ୨୩୪ ଜଣ ସାକ୍ଷର ଥିବା ସମୟରେ ୧୯୯୧ ମସିହା ବେଳକୁ ଏହି ସାକ୍ଷର ସଂଖ୍ୟା ୩୫୨ ଲକ୍ଷରେ ପହଞ୍ଚି ପାରିଛି । ସାକ୍ଷର ହାର ବୃଦ୍ଧି ଯୋଗୁଁ ନିରକ୍ଷର ସଂଖ୍ୟା ହ୍ରାସ ପାଇଥିବା ଆଶା କରାଯାଏ । କିନ୍ତୁ ତାହା ନହୋଇ ନିରକ୍ଷର ସଂଖ୍ୟା ଗତ ଦଶନ୍ଧିରେ ୬୨ ଲକ୍ଷକୁ ବୃଦ୍ଧି ପାଇଛି ।

କେରଳ ରାଜ୍ୟରେ ସାକ୍ଷର ସଂଖ୍ୟା ୯୧ ପ୍ରତିଶତ ଥିବାବେଳେ ବିହାର ରାଜ୍ୟରେ ଏହାର ହାର ୩୮-୫୪ ପ୍ରତିଶତ ରହିଛି । ସେହିଭଳି ରାଜସ୍ଥାନରେ ସାକ୍ଷରତା ହାର ୩୮-୮୧ ପ୍ରତିଶତ ଥିବା ସମୟରେ ସେଠାକାର ମହିଳାମାନଙ୍କ ସାକ୍ଷରତାର ହାର ମାତ୍ର ୨୦-୮୪ ଭାଗ ଅଛି । କିନ୍ତୁ ରାଜସ୍ଥାନର ଗ୍ରାମାଞ୍ଚଳ ମହିଳାମାନଙ୍କ ସାକ୍ଷରତା ହାର ମାତ୍ର ୧୨ ପ୍ରତିଶତ ।

ସ୍ୱାଧୀନତା ପ୍ରାପ୍ତି ପରଠାରୁ ସାକ୍ଷରତା ହାର ବୃଦ୍ଧି ନିମିତ୍ତ ପ୍ରୌଢ଼ ଶିକ୍ଷା କାର୍ଯ୍ୟକ୍ରମ ଚାଲୁ ରହିଆସିଛି । ଏହା ବିଭିନ୍ନ ସମୟରେ ଭିନ୍ନଭିନ୍ନ ନାମକରଣ ନେଇଛି । ୧୯୭୮ ମସିହାରେ ଜାତୀୟ ପ୍ରୌଢ଼ ଶିକ୍ଷା କାର୍ଯ୍ୟକ୍ରମ ଚାଲୁ ହେଲା । ଏହା ଫଳରେ ବୟସ୍କ ନିରକ୍ଷରମାନଙ୍କୁ କେନ୍ଦ୍ର ଭିତ୍ତିକ ଶିକ୍ଷା ଦାନ ବ୍ୟବସ୍ଥା ହେଲା । ସେହି ଦିନଠାରୁ ପ୍ରୌଢ଼ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି । ସାକ୍ଷରତା ହାର ଦ୍ରୁତ ବୃଦ୍ଧି ନିମିତ୍ତ ଯତ୍ନ ନିଆଯାଇଛି । ଏହି କାର୍ଯ୍ୟକ୍ରମ ଦୀର୍ଘ ୧୦ ବର୍ଷ ଧରି ଚାଲୁ ରହିବା ପରେ ଏଥିରେ ସାମାନ୍ୟ ପରିବର୍ତ୍ତନ କରାଗଲା । ଏହି ୧୦ ବର୍ଷ ସମୟ ସୀମା ମଧ୍ୟରେ ଯୋଜନାର ପରିଚାଳନାରେ ତ୍ରୁଟି, କାର୍ଯ୍ୟକ୍ରମ ସମୀକ୍ଷା କରିବାର ଧାରା ଓ ଉପଯୁକ୍ତ ତାଲିମର ଅଭାବ, ଉନ୍ନତ ପ୍ରଣାଳୀର ଶିକ୍ଷା ଦାନର ଅଭାବ ଫଳରେ କାର୍ଯ୍ୟକ୍ରମରେ ବାଧା ସୃଷ୍ଟି ହେଲା । କାର୍ଯ୍ୟକ୍ରମର ସମସ୍ତ ତ୍ରୁଟିବିଚ୍ୟୁତି ସବୁଠାରେ ସମାଲୋଚିତ ହେଲା ।

ଏଣୁ ୧୯୮୮ ମସିହାରେ ଜାତୀୟ ସାକ୍ଷରତା ମିଶନ ଗଠିତ ହେଲା । ଏହି ଜାତୀୟ ସାକ୍ଷରତା ମିଶନ କର୍ତ୍ତୃପକ୍ଷ ଏକ ସ୍ୱାଧୀନ ସଂସ୍ଥା । ସରକାରଙ୍କ ତରଫରୁ ଏହି ସଂସ୍ଥାକୁ ସ୍ୱତନ୍ତ୍ର ଭାବେ ପ୍ରଶାସନିକ ଓ ଆର୍ଥିକ କ୍ଷମତା ପ୍ରଦାନ କରାଯାଇଛି । ଏଭଳି ସଂସ୍ଥା ଗଠନ ମୂଳରେ ସାକ୍ଷରତା କାର୍ଯ୍ୟକ୍ରମକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ଜାତୀୟ ସ୍ତରରେ ସମସ୍ତ ଶକ୍ତି ବିନିଯୋଗ କରି କାର୍ଯ୍ୟକ୍ରମର ସଫଳତା ହାସଲ କରାଯିବ । ଏହି ସଂସ୍ଥା ସ୍ୱତନ୍ତ୍ର ଭାବେ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମିତ୍ତ ନୂତନ ପଦ୍ଧତି ଅନୁସରଣ କରିବ । ଜନ ସହଯୋଗରେ ନିଷ୍ଠାପର ଭାବେ କାମ କରିବାକୁ ପ୍ରୋତ୍ସାହନ ଦିଆଯିବ । ସମସ୍ତ ପ୍ରକାର ପ୍ରତିବନ୍ଧକ ଏଡ଼ାଇବା ପାଇଁ କାର୍ଯ୍ୟକ୍ରମରେ ବୃଦ୍ଧି ଉଦ୍ୟମ କରାଯିବ ।

ଏହି ସଂସ୍ଥା ଗଠନ ପରେ ସମଗ୍ର ଦେଶରେ ଅଧିକ ଉତ୍ସାହର ସହିତ ସାକ୍ଷରତା କାର୍ଯ୍ୟକ୍ରମକୁ ଚାଲୁ କରିବାକୁ ପ୍ରଯତ୍ନ ହେଉଛି । ଏଥିରେ ସମସ୍ତ ବୟସ୍କ ନିରକ୍ଷରଙ୍କୁ ସାକ୍ଷର କରିବାକୁ ହେବ । ସେଥିପାଇଁ ଜନସାଧାରଣଙ୍କ ଆନ୍ତରିକ ସହଯୋଗ ଦରକାର । ଯେଉଁମାନେ ନିରକ୍ଷରମାନଙ୍କୁ ଶିକ୍ଷା ଦାନରେ ବ୍ରତୀ ହେବେ ସେମାନଙ୍କୁ ସ୍ୱେଚ୍ଛାସେବୀ ମନୋଭାବ ନେଇ କାମ କରିବାକୁ ହେବ । ଗତାନୁଗତିକ ଧାରା ଅଥବା ପୂର୍ବରୁ ଅନୁସୃତ ଶିକ୍ଷା ପ୍ରଣାଳୀରେ ଶିକ୍ଷା ଦାନ କରି ତହିଁରେ କେତେକ ପରିବର୍ତ୍ତନ କରାଯିବ । ଏହାକୁ ଯଥା ସମ୍ଭବ ସ୍ୱୟଂ ଚାଳିତ କରିବା ପାଇଁ ଯତ୍ନ କରାଯିବ । ଏଥିପାଇଁ ଗାନ୍ଧୀବାଦୀ ଭାବଧାରା ଓ ସର୍ବୋଦୟ ଆନ୍ଦୋଳନ ରୂପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯିବ । ସେଥି ସହିତ ଗୁଜରାଟ ବିଦ୍ୟାପୀଠ, ବନବାସୀ ସେବାଶ୍ରମ ଭଳି ମହତ୍ ସ୍ୱେଚ୍ଛାସେବୀ ଅନୁଷ୍ଠାନର ସାହାଯ୍ୟ ସହଯୋଗ ଲୋଡ଼ାଯିବ । ସେଥି ସହିତ ଭାରତ ଜ୍ଞାନ ବିଜ୍ଞାନ ସଂସ୍ଥା ଦ୍ୱାରା ସାକ୍ଷରତାର ବାର୍ତ୍ତା ପ୍ରସାର କରିବା ପାଇଁ ପଦଯାତ୍ରା ଆନ୍ଦୋଳନକୁ ଉତ୍ସାହିତ କରାଯିବ ।

ଜାତୀୟ ସାକ୍ଷରତା ମିଶନ୍ ପ୍ରଥମ କରି ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଆମ ଦେଶର କେରଳ ରାଜ୍ୟରେ ପ୍ରଥମ କରି ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ଏର୍ଣ୍ଣାକୁଲମ୍ ଜିଲ୍ଲାରେ କାର୍ଯ୍ୟକାରୀ କରିଥିଲେ । କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହ ଜିଲ୍ଲା ପ୍ରଶାସନର ସକ୍ରିୟ ସହଯୋଗିତାରେ ଏର୍ଣ୍ଣାକୁଲମ୍ ଜିଲ୍ଲା ଏକ ବର୍ଷ ସମୟ ମଧ୍ୟରେ ସମ୍ପୂର୍ଣ୍ଣ ସାକ୍ଷରତା ହାସଲ କରିଥିଲା । କେରଳ ଶାସ୍ତ୍ର ସାହିତ୍ୟ ପରିଷଦ ଭଳି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲା ।

ସାକ୍ଷରତା କାର୍ଯ୍ୟକ୍ରମ ନିମିତ୍ତ ଜନ ସହଯୋଗ ଏକାନ୍ତ ଜରୁରୀ । ସାଧାରଣ ଲୋକଙ୍କୁ ପ୍ରଭାବିତ କରି ବିଭିନ୍ନ କମିଟି ଗଠନ କରାଯାଇ ସାକ୍ଷରତା ହାସଲ ନିମିତ୍ତ ଦାୟିତ୍ୱ ନ୍ୟସ୍ତ କରାଯିବା ଆବଶ୍ୟକ । ବିଭିନ୍ନ ଅଞ୍ଚଳରେ ସ୍ୱେଚ୍ଛାସେବୀମାନଙ୍କୁ ଅବସ୍ଥାପିତ କରାଯାଇ ସାକ୍ଷରତା କାର୍ଯ୍ୟକ୍ରମର ସମୀକ୍ଷା ଓ ପରିଚାଳନା ମଧ୍ୟ ଦରକାର । ସେଥି ସହିତ ସରକାରୀ ସ୍କୁଲର ସମସ୍ତ ଉନ୍ନୟନ ବିଭାଗର ସହଯୋଗ ଲୋଡ଼ି ଲୋକଙ୍କ ଆବଶ୍ୟକତା ମେଣ୍ଟାଇବା ଦିଗରେ ସ୍ୱେଚ୍ଛାସେବୀ କର୍ମୀମାନେ ଓ ସହକାରୀ କର୍ମକର୍ତ୍ତାମାନେ ତତ୍ପର ହେଲେ ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ନିଶ୍ଚିତ ଭାବେ ସଫଳତା ହାସଲ କରିବ ।

ସମାଜର ବିଭିନ୍ନ ଶ୍ରେଣୀ, ଗୋଷ୍ଠୀର ଲୋକଙ୍କୁ ସାକ୍ଷରତା ସମ୍ପର୍କରେ ବୁଝାଇ ଏହା ହାସଲ କରିବାକୁ ପ୍ରବର୍ତ୍ତାଇଲେ ଓ ସମସ୍ତେ ଏକ ମନ ଏକ ପ୍ରାଣରେ ଏଥିରେ ସହଯୋଗ କଲେ କାର୍ଯ୍ୟକ୍ରମ ସଫଳତା ହାସଲ କରିବ ଏଥିରେ ଦ୍ୱିମତ ହେବାର ନାହିଁ ।

---

ସହକାରୀ ନିର୍ଦ୍ଦେଶକ,
ଗଣ ଶିକ୍ଷା ନିର୍ଦ୍ଦେଶାଳୟ ।



ପୁରୀ ଜିଲ୍ଲା ଓଲାଠାରେ ରେଡ଼ିଓ ରୁରାଲ୍ ଫୋରମ୍ ଦ୍ୱାରା ଆୟୋଜିତ ଏକ ପ୍ରଦର୍ଶନୀକୁ ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ କାଳୀକୁମାର ରଥ ବୁଲି ଦେଖୁଛନ୍ତି ।

# ଓଡ଼ିଶାରେ ଆୟୁର୍ବେଦର ପ୍ରସାର

✱ ଡାକ୍ତର ଦୀନବନ୍ଧୁ ମହାରଣା

ବେଦ, ସଂହିତା, ପୁରାଣ ଓ ଇତିହାସର ପୃଷ୍ଠା ଗୋଟିଏ ପରେ ଗୋଟିଏ ଉନ୍ମୋଚନ କଲେ ଜଣାଯାଏ ଯେ, ଆର୍ଯ୍ୟ ଭାରତ ଭୂମିରେ ଆୟୁର୍ବେଦ ଚିକିତ୍ସାର ଆବିର୍ଭାବ ଦିଗନ୍ତପ୍ରସାରୀ । ଏହି ଆୟୁର୍ବେଦ ଚିକିତ୍ସା ଅତି ପୁରାତନ ଓ ସର୍ବ ଚିକିତ୍ସାର ଜନକ ଭାବରେ ପରିଗଣିତ । ପ୍ରାୟ ଖ୍ରୀ: ପୂ: ଛଅ ହଜାର ବର୍ଷତଳେ ଏହା ଭାରତବର୍ଷରେ ପ୍ରଥମେ ବିସ୍ତାର ଲାଭ କଲାପରେ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କରେ ପ୍ରସ୍ତର ଓ ପ୍ରସାର ଲାଭ କରିଥିଲା । ଏଠାରେ ଉଲ୍ଲେଖ କରାଯାଇ ପାରେ ଋକ୍‌ବେଦ ସମୟରୁ ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ ପର୍ଯ୍ୟନ୍ତ ଆୟୁର୍ବେଦ ପୃଥିବୀର ଏକମାତ୍ର ଚିକିତ୍ସା ଶାସ୍ତ୍ର ରୂପେ ପ୍ରଭାବ ବିସ୍ତାର କରିଥିଲା । ସେତେବେଳେ ଚରକ ଓ ସୁଶ୍ରୁତ ସଂହିତା । ଆରବୀୟ ଭାଷାରେ ଅନୁବାଦ ହୋଇ, ଆରବ ପରେ ମିଶର, ରୋମ ଓ ସମଗ୍ର ଇଉରୋପରେ ବିସ୍ତାର ଲାଭ କରିଥିଲା ।

ଆୟୁର୍ବେଦର ଇତିହାସକୁ ପର୍ଯ୍ୟାଲୋଚନା କଲେ ଜାଣିବାକୁ ମିଳେ, 'ଆୟୁର୍ବେଦ'ହିଁ ଅଥର୍ବ ବେଦର ଉପବେଦ । ବହୁ ପ୍ରବୀଣ ଆୟୁର୍ବେଦ ବିଶାରଦ ଯଥା– ଭଗବାନ ଧନ୍ୱନ୍ତରୀ, ଚରକ, ସୁଶ୍ରୁତ, ବାଗ୍‌ଭଟ୍ଟ, ଭେଳ ଓ ମାଧବକର ପ୍ରଭୃତିଙ୍କ ଗବେଷଣା ଫଳରେ ଏହି ଚିକିତ୍ସା ପ୍ରସାର ଲାଭ କରିଥିଲା । ଓଡ଼ିଶାର ଶ୍ରୀମନ୍ଦିରରେ ଏବେବି ପୂଜା ପାଉଥିବା "ମାଦଳାପାଞ୍ଜି"ର ବର୍ଣ୍ଣନା ଅନୁଯାୟୀ ଓଡ଼ିଶାର ଗଜପତି ମହାରାଜା ଓ ଗଡ଼ଜାତ ଅଞ୍ଚଳର ଶାସକ ଏବଂ ତାଙ୍କର ସମ୍ପର୍କୀୟମାନଙ୍କର ସ୍ୱାସ୍ଥ୍ୟ ଅବସ୍ଥା ବୁଝି ଔଷଧ ଦେବା ନିମନ୍ତେ ରାଜବୈଦ୍ୟମାନ ନିଯୁକ୍ତି ପାଇଥିଲେ । ପୂର୍ବରୁ କେତେକ ଜମିଦାର ସେମାନଙ୍କ ଚିକିତ୍ସା ପାଇଁ ବୈଦ୍ୟରାଜମାନ ନିଯୁକ୍ତି କରିଥିବାର ପ୍ରମାଣ ମିଳେ । ପ୍ରାକ୍ ସ୍ୱାଧୀନତା ପୂର୍ବରୁ ଏହି ରାଜକୀୟ ଶାସନ ଚାଲିଥିବା ବେଳେ ଆୟୁର୍ବେଦ ଚିକିତ୍ସା ଉଚ୍ଚତମ ସୋପାନରେ ପହଞ୍ଚିଥିଲା । ହେଲେ ପରବର୍ତ୍ତୀ କାଳରେ ୭୦୦–୮୦୦ ବର୍ଷ ବିଦେଶୀ କବଳରେ ରହିବା ଫଳରେ ଭାରତୀୟ ସଂସ୍କୃତି ବିକୃତ ତଥା ଅବହେଳିତ ହେଲା । ଇଂରାଜୀ ଭାଷା, ସାହିତ୍ୟ ଓ ଚିକିତ୍ସାକୁ ଆମ ଉପରେ ଲଦି ଦିଆଗଲା । ଫଳରେ ଆୟୁର୍ବେଦ ଚିକିତ୍ସା ବିଜ୍ଞାନ ଯେ, ବିଲୁପ୍ତ ବା ଅବହେଳିତ ହେଲା ଏକଥା ଆମେ ନିଶ୍ଚୟ ମାନିବା ।

ଆୟୁର୍ବେଦ ଚିକିତ୍ସା ପ୍ରତି ଶ୍ରୀଜଗନ୍ନାଥଙ୍କର ସ୍ୱତନ୍ତ୍ର ପ୍ରୀତି ରହିଥିବାର ପ୍ରମାଣମିଳେ । ଶ୍ରୀଜଗନ୍ନାଥଙ୍କୁ ପ୍ରତିବର୍ଷ ଆଷାଢ଼ ମାସ କୃଷ୍ଣ ପ୍ରତିପଦଠାରୁ ନେତ୍ର ଉତ୍ସବ ପର୍ଯ୍ୟନ୍ତ ୧୫ ଦିନ ଧରି ଜ୍ୱର ହୋଇ ଥାଏ । ଏହି ଜ୍ୱରରୁ ଆରୋଗ୍ୟ ହେବା ପାଇଁ ଶ୍ରୀଜଗନ୍ନାଥଙ୍କୁ ଆୟୁର୍ବେଦ ଚିକିତ୍ସା ଶାସ୍ତ୍ର ଅନୁଯାୟୀ ଦଶମୂଳମୋଦକ, ବୃହତ ପଞ୍ଚମୂଳ ଯଥା– ବିଲ୍ୱ, ଗମ୍ଭାରୀ, ଶ୍ୟୋନାକ, ପାଟଳା, ଅଗ୍ନିମନ୍ଥ ଏବଂ ଲଘୁ ପଞ୍ଚମୂଳ ଯଥା– ଶାଳ ପର୍ଣ୍ଣି, ପୃଶ୍ନିପର୍ଣ୍ଣି, ଓ ଗୋକ୍ଷୁରା ପ୍ରଭୃତିର ପାଚନ ଦିଆ ଯାଉଛି ।

ସେଦିନର ଆଦିମାନବ ବଣ ମଣିଷ ମଧ୍ୟ, ଝରଣାର ପାଣି ପିଇ ବଣପାହାଡ଼ର ଫଳମୂଳ ଖାଇ ଜୀବନ ଧାରଣ କରୁଥିଲା । ଆଉ ନିଜର ଆରୋଗ୍ୟ ପାଇଁ ସଂଗୃହୀତ କେଉଁ ଗଛର ପତ୍ର କେଉଁ ଗଛର ମୂଳ, କେଉଁ ଦ୍ରବ୍ୟର ଭସ୍ମକୁ ଔଷଧ ରୂପେ ବ୍ୟବହାର କରି ଦୀର୍ଘାୟୁ ହୋଇ ପାରୁଥିଲା । ହେଲେ ଆଜି ସଭ୍ୟତାର କାର୍ଣ୍ଣିରୀ ସ୍ପର୍ଶରେ ସାମାଜିକ ଜୀବନରେ, ଚାଲିଚଳନରେ ଅନେକ ରଙ୍ଗ ଲାଗିଛି, ରୂପ ବଦଳିଛି । ପାଣି, ପବନ, ଆଲୋକ ସବୁକୁ ମଣିଷ ନିଜ ନିୟନ୍ତ୍ରଣରେ ରଖୁଛି । ହେଲେ ମଣିଷ କ'ଣ ଭୁଲି ଯାଇଛି ନା ଭୁଲିପାରିବ ଜୀବନ ଧାରାର ମୂଳମନ୍ତ୍ର କାଳିଦାସଙ୍କ "ଶରୀରମାଦ୍ୟମ୍ ଖଳୁଧର୍ମ ସାଧନମ୍" । ଶରୀର ଆଗ ଆଉସବୁ ପଛ । ମଣିଷ ସୁସ୍ଥ ରହିଲେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ସାଧନ କରି ପାରିବ । ସେଇଥି ପାଇଁ ସେ ଗବେଷଣା ଦ୍ୱାରା ଚିକିତ୍ସା ବିଜ୍ଞାନରେ ଅନେକ ସଂସ୍କାର ଆଣିଛି ।

ଆମେ ସ୍ୱାଧୀନତା ପାଇବା ପରେ , ଆୟୁର୍ବେଦ ଚିକିତ୍ସା ସରକାରୀ ପୃଷ୍ଠ ପୋଷକତାରେ ପୁଣ୍ୟ ସଂଜୀବନୀ ପାଇଁ ଉଜ୍ଜୀବିତ ହେଲା । ହେଲେ ତା'ର ପୂର୍ଣ୍ଣତା ଏଯାଏଁ ଆସିନାହିଁ । ଏଲୋପାଥି ଚିକିତ୍ସା ଭଳି ତା'ର ପ୍ରସ୍ତର ଓ ପ୍ରସାର ପାଇଁ ସରକାର ଯୋଜନାବଦ୍ଧ କାର୍ଯ୍ୟକ୍ରମ ହାତକୁ ନେଇ ଏଥିପାଇଁ ଅଧିକ ଅର୍ଥ ବ୍ୟୟ ବରାଦ କରାଗଲା । ଅନ୍ୟ ପକ୍ଷରେ ଶ୍ରୀଲଙ୍କା ଓ ନେପାଳ ରାଷ୍ଟ୍ରରେ ଆୟୁର୍ବେଦ ଚିକିତ୍ସାକୁ ଜାତୀୟ ଚିକିତ୍ସା ଭାବରେ ଗ୍ରହଣ କରାଯାଇ ଏହାର ପ୍ରସାର କରାଗଲା । ଅବଶ୍ୟ ଗୁଜୁରାଟ ଏବଂ ରାଜସ୍ଥାନ ଭଳି କେତେକ ରାଜ୍ୟ ମନ୍ତ୍ରୀମଣ୍ଡଳରେ ସ୍ୱତନ୍ତ୍ର ଆୟୁର୍ବେଦ ମନ୍ତ୍ରୀଙ୍କୁ ଦାୟିତ୍ୱ ଦିଆଯାଇ ସ୍ୱତନ୍ତ୍ର ମନ୍ତ୍ରଣାଳୟ ସୃଷ୍ଟି କରାଯାଇଛି ଏବଂ ସ୍ୱାସ୍ଥ୍ୟ ବଜେଟ୍‌ରେ ଶତକଡ଼ା ୨୫ ଭାଗରୁ ଅଧିକ ଅର୍ଥ ଆୟୁର୍ବେଦ ଚିକିତ୍ସାର ପ୍ରସାର ପାଇଁ ବରାଦ କରାଯାଉଛି ।

ସ୍ୱାଧୀନତା ପରେ ଓଡ଼ିଶା ରାଜ୍ୟ ସରକାର ଆୟୁର୍ବେଦ ଚିକିତ୍ସା ଓ ଶିକ୍ଷାର ପ୍ରସାର ପାଇଁ କେତେକ ମହାବିଦ୍ୟାଳୟ ଓ ଚିକିତ୍ସାଳୟ ପ୍ରତିଷ୍ଠା କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ଶାସନ କ୍ଷମତାରେ ଥିବାବେଳେ ୧୯୫୯ ମସିହାରେ

ଏହି ଶିକ୍ଷାର ପ୍ରସାର ପାଇଁ ପୁରୀରେ ଗୋପବନ୍ଧୁ ଆୟୁର୍ବେଦ ବିଦ୍ୟାପୀଠ ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ ସମୟରେ ମହାବିଦ୍ୟାଳୟ ନାମ କରଣ କରାଯାଇଥିଲା । ଏହି ଅନୁଷ୍ଠାନରେ ଆଠଟି ବିଭାଗ ଯଥା– କାୟ ଚିକିତ୍ସା (ମେଡ଼ିସିନ୍), ଦ୍ରବ୍ୟଗୁଣ, ରସଶାସ୍ତ୍ର, ନିଦାନ, ଶାରୀର କ୍ରିୟା ଓ ଶାରୀର ରଚନା, ଶଲ୍ୟ ଏବଂ ଶାଲାକ୍ୟ ତଥା କୌମାର ଭୃତ୍ୟ ଆଦି ବିଭାଗମାନ ଖୋଲାଯାଇ ଗବେଷଣା ଭିତ୍ତିକ ଶିକ୍ଷା ଦିଆଗଲା । ପୂର୍ବରୁ ରାଜ୍ୟ ଆୟୁର୍ବେଦ ପରିଷଦ ଦ୍ୱାରା ଏହି ଅନୁଷ୍ଠାନକୁ ନିୟନ୍ତ୍ରଣ କରାଯାଇ **B.S.A.M.** ଅର୍ଥାତ୍ **(Bachelor in Suddha Ayuivedic Medicine)** ଡିଗ୍ରୀମାନ ପ୍ରଦାନ କରାଯାଉଥିଲା । ୧୯୭୫ ମସିହାରେ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳକୁ ପରୀକ୍ଷାର ସୁପରିଚାଳନା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ନିଜ ହାତକୁ ନେଲା । ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କର ଘରୋଇ ଚିକିତ୍ସକ ଡକ୍ଟର ଦ୍ୱାରିକା ନାଥ ହାକିମ୍ ଏହାର ଅଧ୍ୟକ୍ଷଭାବରେ ଦାୟିତ୍ୱ ନେଇ ଅନୁଷ୍ଠାନର ପ୍ରଗତି କ୍ଷେତ୍ରରେ ସହାୟକ ହୋଇଥିଲେ ।

୧୯୭୫ ମସିହାରେ କେନ୍ଦ୍ର ଓ ରାଜ୍ୟସରକାରଙ୍କର ମିଳିତ ସହାୟତାରେ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟରେ ସ୍ନାତକୋତ୍ତର କାୟଚିକିତ୍ସା (ଏମ୍.ଡ଼ି.) ପାଠ୍ୟକ୍ରମ ପ୍ରଚଳନ କରାଗଲା । କିନ୍ତୁ ଏହି ଅନୁଷ୍ଠାନକୁ ନିୟନ୍ତ୍ରଣ କରିବା ପାଇଁ ନୂଆଦିଲ୍ଲୀଠାରେ ଥିବା **C.C.I.M.** (କେନ୍ଦ୍ରୀୟ ଆୟୁର୍ବେଦ ପରିଷଦ) ଦାୟିତ୍ୱ ଗ୍ରହଣ କଲା ଓ ସିଲାବସ୍ ପ୍ରଚଳନ କରିଥିଲା । ସମ୍ପ୍ରତି ଆୟୁର୍ବେଦ ପାଠ୍ୟକ୍ରମ **B.A.M.S. (Bachelor in Ayurvedic Medicine and Surgery)** ଡିଗ୍ରୀଭାବରେ ସାରା ଭାରତବର୍ଷରେ କାର୍ଯ୍ୟକାରୀ ହେଉଛି । ଏହି ଡିଗ୍ରୀ ଅଧ୍ୟୟନ ପାଇଁ +୨ ବିଜ୍ଞାନ ସହିତ ବାୟୋଲୋଜି ବିଷୟ ଥିଲେ ନାମଲେଖା ପାଇଁ ଦରଖାସ୍ତ ଆବେଦନ କରିବା ପାଇଁ ନୀତି ନିର୍ଦ୍ଧାରଣ ହୋଇଛି । ଓଡ଼ିଶାର ପୁରାତନ ଆୟୁର୍ବେଦ ଶିକ୍ଷାକେନ୍ଦ୍ର ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟକୁ ମିଶାଇ ଛଅଟି ଆୟୁର୍ବେଦ ମହାବିଦ୍ୟାଳୟ ଗଢ଼ି ଉଠିଛି । ସେଗୁଡ଼ିକ ମଧ୍ୟରେ ସରକାରୀ ଆୟୁର୍ବେଦ ମହାବିଦ୍ୟାଳୟ ବଲାଙ୍ଗୀର ଏବଂ ସଂଘୋଷ ଅନୁଷ୍ଠାନମାନ ହେଲା ଅନନ୍ତ ତ୍ରିପାଠୀ ଶର୍ମା ଆୟୁର୍ବେଦ ମହାବିଦ୍ୟାଳୟ, ବ୍ରହ୍ମପୁର ପାଇକମାଳଠାରେ ଥିବା ଶ୍ରୀଶ୍ରୀନୃସିଂହନାଥ ଆୟୁର୍ବେଦ କଲେଜ ଏହା ସହିତ ଭୁବନେଶ୍ୱର ଏବଂ ବାରିପଦାଠାରେ ମଧ୍ୟ ଦୁଇଟି ଆୟୁର୍ବେଦ ମହାବିଦ୍ୟାଳୟ ପ୍ରତିଷ୍ଠା କରାଯାଇ, ଛାତ୍ର ଛାତ୍ରୀମାନଙ୍କୁ ଗବେଷଣାତ୍ମକ ଶିକ୍ଷା ପ୍ରଦାନ କରାଯାଉଛି ।

ଆୟୁର୍ବେଦ ଚିକିତ୍ସାର ପ୍ରଧାନ ଅଙ୍ଗ କୁହାଯାଉଥିବା ବନୌଷଧି ଓଡ଼ିଶାର ଶିମିଳିପାଳ ଜଙ୍ଗଲ ଓ ଗନ୍ଧମାର୍ଦ୍ଦନ ପର୍ବତ ମଧ୍ୟରୁ ଅତି ସୁଲଭ ମୂଲ୍ୟରେ ମିଳୁଥିବାରୁ, ସରକାରଙ୍କ ପକ୍ଷରୁ ଏହାର ରକ୍ଷଣାବେକ୍ଷଣ କରାଯିବା ଆବଶ୍ୟକ । ତେଣୁ ରାଜ୍ୟ ଓ କେନ୍ଦ୍ରସରକାର ଅମୃତ ତୁଲ୍ୟ ଆୟୁର୍ବେଦ ଚିକିତ୍ସା, ଶିକ୍ଷା ଓ ଗବେଷଣା ପାଇଁ ଅଧିକ ଅର୍ଥ ବ୍ୟୟ ବରାଦ କଲେ ସ୍ୱଳ୍ପ ବ୍ୟୟରେ ବହୁ ଦୁରାରୋଗ୍ୟ ବ୍ୟାଧି ଆରୋଗ୍ୟ ହୋଇ ପାରନ୍ତା ।

---

**ଓଡ଼ିଶା ଆୟୁର୍ବେଦ ସେବା ସଦନ,**
**ଓ. ଏମ୍. ପି. ମାର୍କେଟ, କଟକ-୩ ।**



**ହିନ୍ଦ୍ କୁଷ୍ଠ ନିବାରଣ ସଙ୍ଘର ବାର୍ଷିକ ସାଧାରଣ ପରିଷଦ ବୈଠକରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଉଦ୍‌ବୋଧନ ଦେଉଛନ୍ତି ।**

OGP—MP—PTS (I.&P.R.) 14—10,000—7-8-1993



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉପସ୍ଥିତିରେ କଳିଙ୍ଗ ଶକ୍ତି ନିଗମର ଅଧ୍ୟକ୍ଷ ଡଃ
ସାହେଲାବିର୍ ଓ ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ପରିଷଦର ଅଧ୍ୟକ୍ଷ ଶ୍ରୀ ଏସ୍. କେ. ମହାପାତ୍ରଙ୍କ
ମଧ୍ୟରେ ବିଜୁଳି ଶକ୍ତି କ୍ରୟ ଚୁକ୍ତିନାମା ସ୍ୱାକ୍ଷରିତ ।



ପୁରୁନା କଟକଠାରେ ଅର୍ଥ ମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲଙ୍କ ଉପସ୍ଥିତିରେ କିଷାନ୍ ବିକାଶ
ପତ୍ରର ଲଟେରୀ ଉଠାଣି ।

Licence No. C.R.N.P. 5—Licensed to post without Pre-payment



ରାକ୍ଷୀ ପୂର୍ଣ୍ଣିମା ଦିନ ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟର କୁମାରୀମାନେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ରାକ୍ଷୀ ପିନ୍ଧାଇ ଦେଉଛନ୍ତି ।



ଯାଜପୁରଠାରେ ଜିଲ୍ଲା ଯୋଜନା ଓ ଉନ୍ନୟନ ପରିଷଦ ବୈଠକରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଅଭିଭାଷଣ ଦେଉଛନ୍ତି ।

